# କୁନ୍ତଳା କୁମାରୀ କବିତାଗୁଚ୍ଛ

ଲେଖିକା :

ସ୍ୱର୍ଗତ କୁନ୍ତଳା କୁମାରୀ ସାବତ

ସମ୍ପାଦନା :

ଶ୍ରୀ ଅନନ୍ତ ମିଶ୍ର



ଆର୍ଯ୍ୟ ଷ୍ଟୁଡେଣ୍ଟସ୍ ଷ୍ଟୋର୍

# କୁନ୍ତଳା କୁମାରୀ କବିତାଗୁଚ୍ଛ

ପ୍ରକାଶକ :
**ଶ୍ରୀ ଅନନ୍ତ ମିଶ୍ର**
କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର
କଟକ-୭୫୩୦୦୨

ନୂତନ ମୁଦ୍ରଣ—୧୯୮୨

ପ୍ରଚ୍ଛଦ :
**ଶ୍ରୀ ଅସୀତ ମୁଖାର୍ଜୀ**

ମୂଲ୍ୟ : ଛ'ଅ ଟଙ୍କା

**Kuntala Kumari Kabita Guchha**
( Collection of Poetay )
Late Kuntala Kumari Sabat

Publisher
**Anant Misra**
Cuttack Students' Store
Cuttack-2

New Edition—1982

Price : Rs. 6-00

# ତରୁଣର ଆବାହନ

( ୧ )

ନିରାଶାର ଗିର ନ ଘୋଷୁ ରସନା,
ନ ବାଜୁ ତାହା ଏ ଜାତି ଶ୍ରବଣରେ,
ଦେଢ଼କୋଟି ପ୍ରାଣ ନବ ଜାଗରଣେ
ଯାଅ ଉଠିବାକୁ ନବ ସ୍ପନ୍ଦନରେ ।

କର୍ମା ଧୂଳିତଳେ ରଚ ମୃତ୍ୟୁ ଶେଯ
ହରାଇବେ ସର୍ବେ ନର ବୀର୍ଯ୍ୟ ତେଜ,

ଅନନ୍ତ ମରଣ ଏ ଜାତି କପାଳେ
ଲେଖିନାହିଁ ବିଶ୍ୱଧାତ୍ରୀ,
ଉଠିବେ ଉଠିବେ ଦେଢ଼କୋଟି ଆତ୍ମା
ଅମୃତ ପଥ ଯାତ୍ରୀ ।

କିଏ କହେ ନାହିଁ ଆମର ସାହସ,
କିଏ କହେ ଆମେ ଅଜ୍ଞାନ ଅଳସ ?

କିଏ କହେ ମୃତ ଓଡ଼ିଆର ପ୍ରାଣ,
ଚିର ଅବସାନ ତା ଗୌରବ, ତ୍ରାଣ ?
ପରପଦାହତ, ଦୁର୍ବଳ ଭୀରୁ, ନିତ୍ୟଲକେ ମିଥ୍ୟା ପ୍ରମାଣ ।

ପଡ଼ିଅଛି ଭାଙ୍ଗି ଦୁର୍ଗ ବାରବାଟୀ,
କୋଣାର୍କ ଶିଖର ଚୁମ୍ବି ଅଛି ମାଟି;

ମାଳଚନ୍ଦ୍ରବାନା ଲୋଟୁଛି ଧୂଳିରେ,
ପୋତି ହେଉଅଛି ଚିଲିକା ବାଲିରେ;

ଆଜ ନ ନାଚଇ ଓଡ଼ିଆ ବୋଇତ
ବାରିଧି ତରଙ୍ଗ ରଙ୍ଗେ ଆଲିଙ୍ଗିତ,
ନୀରବ ଉତ୍କଳ ସାରଳା ସଙ୍ଗୀତ

ହଜିଅଛି ଚିର ଏ ଜାତି ବିଭବ,
ଉଷାତଳେ ମ୍ଳାନ ଓଡ଼ିଆ ଗରବ;

ଛିନ୍ନ ଭିନ୍ନ ଅଙ୍ଗେ, ମରଣ ଉତ୍ସଙ୍ଗେ
ନବଜାଗରଣ ଆଉ କି ସମ୍ଭବ ?

ଦିଅ ମରିବାକୁ ଶାନ୍ତ ସୁଧୀରେ
ଆଉ ନ ଉଠିବ ଏ ଜାତି ମଧ୍ୟରେ
ନ କହ ନ କହ ଏ କୈତବ-ବାଣୀ !

ଜାତି କଣ୍ଠପୁଟେ, କ୍ଷୀଣ ପ୍ରାଣତାର
କରିବ ବା ଶୋକେ ଆର୍ତ୍ତ ହାହାକାର,

ସ୍ମରି ନିଜ ଦୁଃଖ ଦୁର୍ଦ୍ଦଶା ହୀନତା
ନିଜନେତ୍ରେ ତାର ବଢ଼ିବ ମ୍ଳାନତା,

କହିଁ ଅକାରଣେ ଦେଶମାତୃ ପ୍ରାଣେ
କ୍ଳେଶ ରେଖା ଟାଣି ଲଭିବ କଷଣ,
ଉଠ ଉଠ ସେହି ଉପେକ୍ଷି ମରଣ ।

ହୃଦୟ ସ୍ପନ୍ଦନ ହଜିନାହିଁ ତାର,
ଶିରାରେ ଶିରାରେ ବହେ ପ୍ରାଣଧାର,

କମ୍ପା କରୁଅଛ ଦୁର୍ଭିକ୍ଷ, ବନ୍ୟା, ବ୍ୟାଧି ସାଶଅଛୁ ସର୍ବ,
ଦୈନ୍ୟ ହରୁଛୁ ମଣିଷ ପଣିଆ, ମଥା ଟେକିବାର ଗର୍ବ ?
ନ କାନ୍ଦ ନ କନ୍ଦ ଆଉ,

ଜାଗିଲେଣି ବୀର ତରୁଣ ସନ୍ତାନ
ଘୁଞ୍ଚାଇବେ ମିଳି ମାତୃ ଅପମାନ;

କେ କେତେ ପ୍ରେରଣା ପ୍ରାଣେ ଲଭି ଶୁଭ
ଧରି ହୃଦେ ଦୃଢ଼ ବିଶ୍ୱାସ ଧ୍ରୁବ,

ଜାଗିଛନ୍ତି ନବକର୍ମେ,
ନିରାଶାର ବାଧା ନ ବାଜୁ ମର୍ମେ,

ଦେଶ ନବପ୍ରାଣ ପାଉ ।

କମ୍ପା ବାଧା ବିଘ୍ନ ପାଷାଣ ଘର୍ଷଣ
ସ୍ଥାପିବ ଚରଣ ପ୍ରାନ୍ତେ ଅକାରଣ ?

ହେଉ ଅଗ୍ରସର ନବ ଆନନ୍ଦରେ
ତରୁଣ ବାହିନୀ ନବ ଜୀବନରେ,

ମୃତ୍ୟୁ-ତମସା ଠେଲି ଯାତ୍ରାଲେକେ
ଚାଲିଛନ୍ତି ସେନା ସାହସ ପୁଲକେ,

ଗାଉଛନ୍ତି ବିଶ୍ୱଜୟୀ,

ନବ ଯଉବନ ଉନ୍ମାଦନାରେ କେଇଁବେ ପର୍ବତ ନଈ ।

ଦେଉ କୋଟି ଜନ ଅଜେୟ ଉଦ୍ୟମ
ଲଭିବ ସମ୍ପଦ, ଅଦ୍ଭୁତ କରମ,

ସାଧିବ ଏ ମହୀମଣ୍ଡଳେ; ହେଳାରେ
ନବଳ ତରୁଣ ପ୍ରାଣ ଅବଜ୍ଞାରେ
ସେ ତରୁଣ ହୃଦ ପ୍ରତି ରକ୍ତବିନ୍ଦୁ
ମିଶି ହେଉବ ମହାଶକ୍ତି ସିନ୍ଧୁ ।
କୋଟି କୃଷ୍ଣାର୍ଜୁନ, ସୁଭଦ୍ରା ସାବିତ୍ରୀ
ଜନମିବେ ଦିନେ ଉତ୍କଳ ପବିତ୍ରୀ;
ଉତ୍କଳ ସମ୍ବଳ ସେହିମାନେ ଧିନା,
ହେଉନ୍ତୁ ଅଳପ, ଅଗଣା ଅଚହ୍ନା ।

( ୨ )

ଦିନେ ରଣ ପ୍ରାଙ୍ଗଣର ମୃତ୍ୟୁ ନର୍ତ୍ତନେ
ବାଜଛି ମୁରଲୀ ତାନେ
ଗୀତାର ତତ୍ତ୍ୱ, ଯୋଗ ମହତ୍ତ୍ୱ, ତରୁଣ ସାରଥି ପ୍ରାଣେ ।
ମହାବୋଧି ସତ୍ତ୍ୱମୂଳେ,
ତରୁଣ ତପସ୍ୱୀ ମହାଜ୍ଞାନ ଲଭି
ଉଦ୍ଧାରିଲେ ଜୀବକୁଳେ ।
ପର୍ବତ କନ୍ଦରେ ତରୁଣ ଅନ୍ତରେ
ଜାଗିଥିଲା ଯେଉଁ ବାଣୀ,
ମଥାନତ କରି ଶୁଣିଲା ମେଦିନୀ,
ଉଦ୍ଧରିଲେ କୋଟି ପ୍ରାଣୀ ।
ଝୁରି କୃଶ କାଷ୍ଠେ ବହିଥିଲା ଦିନେ ତରୁଣର ରକ୍ତଧାର,
ନମସ୍କରିଲା ତହିଁ ଅର୍ଦ୍ଧ ଅବନୀ, ପୂଜିଲା ସେ ପାରାବାର,
ତରୁଣ ସେ ନାଜରୀନ,

ଯୁଗେ ଯୁଗେ ଅନ୍ତରେ ମନ୍ଦିରେ
ପ୍ରେମ କରେ ବିଚରଣ ।
ଉଦ୍ଧାରିବ ସେହି ଏ ଘୋର ଜଙ୍ଗଲ
ତପୋଭୂମି ଦିନେ ହେବ ଉଜ୍ଜ୍ୱଳ ।
ଅନଙ୍ଗ ଯଯାତି ଆସିବେ ତ ଫେରି,
ବାଜିବ ଓଡ଼ିଆ ଜୟ ତୂରୀ ଭେରୀ ।
ଜାଗିଅଛୁ ଆଜ ତରୁଣ କେଶରୀ
ନୀଳାଚଳ ପୁଣ୍ୟ କୂଳେ,
ବନ୍ଦନା ଗୀତି ଗାଉଅଛି ଜଳ ତରଙ୍ଗ
ସାଗର କୂଳେ ।
ଫୁଟିଅଛି ଫୁଲ ନାଗେଶ୍ୱର ବନେ,
ଶୁଭେ ଶଙ୍ଖ ସ୍ୱନ ଏକାମ୍ର କାନନେ
ଗୁନ୍ଥି ଶତେ।ପୂଜା ସଜାଉଛି ମାଳା
ଲଳିତ ନଳିନୀ-ଦଳ ଦାମ ଧେନ
ପୂଜିବେ ମନ୍ଦାରେ ମଞ୍ଜୁ ପାଦ ବେନ,
ଆସିବେ ଓହ୍ଲାଇ ସ୍ୱର୍ଗ ସୀମନ୍ତିନୀ,
ତରୁଣର ପ୍ରାଣେ ନବ ସଞ୍ଜୀବନୀ
ପୂତ ନୀର ସିଞ୍ଚି ମୋହିବେ ମୋହିନୀ
ଉତ୍କଳର ପ୍ରାଣାସନେ
ଅଭିଷେକ ଆଜ ତରୁଣ ରାଜାର
ପ୍ରେମ-ହେମ ଆଭରଣେ ।

( ୩ )

ହେଲଣି ହେଲଣି ନବ ସୂର୍ଯ୍ୟୋଦୟ,
ଆଉ କି ଲଜ୍ଜା ଆଉ କି ଭୟ ।
ନବ ଯଉବନ ଶିରୀ ସମ୍ପଦେ ହସଇ ପ୍ରକୃତି ରାଣୀ,
ନ କାନ୍ଦ ନ କାନ୍ଦ ଆଜି କର୍ଣ୍ଣମୂଳେ
ନବୀନା ଘୋଷଣ ବାଣୀ ।
ଚିରବ୍ରତ ନାହିଁ କପାଳେ କାହାର,
ଉଠ ଦେଢ଼କୋଟି ପ୍ରାଣୀ !
ଦେଖ ତବ ଦ୍ୱାରେ ତରୁଣର ବେଶେ
ଉଷା ରବି ପ୍ରଭା ଝଳ ଯେ କିଏ ସେ ?
ଆଖି କୋଣେ ତା'ର କି ଜ୍ୟୋତି ଚତୁର,
ଅଧରେ ମୋହନ ଆଶା ମୃଦୁଗିର ।
ଦେଢ଼କୋଟି ଭାଇ ଉଠିବେ, ଓଡ଼ିଆ-
ପ୍ରାଣ ନ ମରିବ ଚିର
ନଅ ବରଷର ତରୁଣ ତପସ୍ୱୀ ତବ ଅରିନ୍ଦମ ବୀର ।
ରଚ ରମ୍ୟମାଳ, ତୁଳସୀ, ମଲ୍ଲିକା
ଦଅ ଧାନ, ଦୁବ, ଚନ୍ଦନ ଟୀକା,
ସଜାଡ଼ ହୃଦୟ-ପୁଣ୍ୟ-ବେଦିକା ।
ନଅ ବରଷର ତରୁଣ ତପସ୍ୱୀ ତବ ଅରିନ୍ଦମ ବୀର,
ଦେଢ଼କୋଟି ଭାଇ ଉଠ ହେ ଓଡ଼ିଆ;
କିପାଇଁ ମରିବ ଚିର ?

—×—

# ନାରୀ ଶକ୍ତି

ଷୋଳ କୋଟି ପ୍ରାଣେ ଆସିଛି ଆହ୍ୱାନ
ଦୂର ମହାକାଶୁଁ ଆଜ,
ଷୋଳ କୋଟି ନାରୀ ଉଠିବେ ଭାରତେ
କରୁଣା କଲ୍ୟାଣେ ସାଜ ।

କେତେଦିନ ଆଉ କହ କେତେଦିନ
ପୁଣ୍ୟ ଆର୍ଯ୍ୟଭୂମି ହୋଇଥିବ ହୀନ ?

ହେର, ଅବସାନ ଆଜ ଦୀର୍ଘ ରାତି,
ଫୁଟେ ପ୍ରାଚୀ ମୂଳେ ନବାରୁଣ ଭାତି,
ଶତ ଶତ ପୂତ ପଦ୍ମା ପୟର ନୂପୁର ଉଠଇ ବାଜ;
ଉଠିବେ ଭାରତ ଶକତି ସଂହତି
ଜାଗିବେ ଭାରତେ ଇନ୍ଦ୍ରା ଭାରତୀ,

ରୁହଁ ରୁହଁ ନେଇ ମେଲ୍‌ଇରେ ଜଡ଼
ମୂଢ଼ ମୋହ ନିଦ୍ରା ଭାଜ ।

ଭାରତର ନାରୀ ଭାରତ ସମ୍ପଦ
ପୂଜ ଦେବୀ ଜ୍ଞାନେ ପଦ-କୋକନଦ,
ଭଗିନୀ, ଜନନୀ, ଜାୟା, ଦୁହିତା ମୁଖ
ଉଜ୍ଜ୍ୱଳ ଅମର୍ତ୍ତ୍ୟ ଆନନ୍ଦ ମୟୂଖ,

ସେ କରଣେ, ତବ ଅନ୍ତର ଅନ୍ଧାର
ଘୁଞ୍ଚିବ ଜଞ୍ଜାଳ ଜ୍ୱାଳା ପାପଭାର,

ସଞ୍ଚରିବ ଭୁଜଦଣ୍ଡେ ଚଣ୍ଡ-ଶକ୍ତି
ପ୍ରଫୁଲ୍ଲ ମାନସ ତାମରସ ଗନ୍ଧେ ସ୍ଫୁରିବ ଅମୃତ ଭକ୍ତି ।

ବସୁନ୍ଧରା ତଳେ ଭାରତରମଣୀ ନୁହେ ହୀନ ନୁହେଁ ଦୀନ,
ଅମର କୀରତି କୋଟି ଯୁଗେ କେବେ
ଜଗତୁଁ ନୋହିବ ଲୀନ;

ଯେତେଦିନ ବହୁଥିବ ଗଙ୍ଗାଧାର
ହିମଗିରିଶିର ଶୋଭିବ ତୁଷାର,

ଆର୍ଯ୍ୟ ରମଣୀର କୀରତି କାହାଣୀ
ମୃଦୁଳ ମଳୟ କରିବ ପ୍ରଚାର ।

ପୂତ ରାଜସ୍ଥାନେ ରାଜଓ୍ୱାଡ଼ା ବନେ,
କଳିଙ୍ଗେ କର୍ଣ୍ଣାଟେ, ବ୍ରଜ ବୃନ୍ଦାବନେ,

ମିଥିଳା, ବିଦର୍ଭ, ବଙ୍ଗେ, ବିନ୍ଧ୍ୟାଚଳେ,
ଆର୍ଯ୍ୟ ମହିଳାର ମହିମା ଉଜ୍ଜ୍ୱଳେ ।

ଆଜି ସୁଦ୍ଧା ସତୀ, ସାବିତ୍ରୀ, ପଦ୍ମିନୀ
ସଂଯୁକ୍ତା, ସୁଭଦ୍ରା, ଜାନକୀ, ରୁକ୍ମିଣୀ,

ଜୀବିତ ଭାରତ ଜୀର୍ଣ୍ଣ କଙ୍କାଳରେ,
ଆର୍ଯ୍ୟମାତା ମରିନାହାନ୍ତି ପ୍ରାଣରେ,

ଗୋପନେ ଗୋପନେ କ୍ଷୀଣ ଶିରାମଧ୍ୟେ
ବହେ ତାର ପ୍ରାଣଧାର,
ଏମନକା ପାଷାଣୀ ମୃତା ଶରତରେ
ଶୁଣୁବ ତା' ହାହାକାର ।

ଲଭେ ନବ ଆଉ କୋହ୍ଳବ ତା ମଥା
ହରିବ ଦୁହିତା ଜନନୀର ବ୍ୟଥା,

ଏଷ୍‌ଠା କୋଟି ନାରୀ ଉଠବେ ଆନନ୍ଦେ
'ବନ୍ଦେ ମାତରମ୍' ଗାଇ,
ଭାରତ ଜନ୍ମର ମହାମନ୍ତ୍ର ଦୀକ୍ଷା
ନେବେ ସେ ଭଗ୍ନୀ ଭାଇ;

ଭୁଲନାହିଁ କେବେ ଭାରତ ସନ୍ତାନ
ନାରୀ ଥିଲେ ଥିଲେ ଦେବତା ପ୍ରଧାନ,

ବାଣୀ, ବୀଣାପାଣି, ଅନ୍ନଦା, ଈଶାନୀ,
ରମା, ନାରାୟଣୀ, ତ୍ରିତାପ ତାରିଣୀ,
ଧର୍ମେ କର୍ମେ ସଦା ସେ ସହଚାରିଣୀ ।

ବୃଥା ଉନ୍ନତରେ ନ କର ଚିତ୍କାର
ଭାରତରେ ଥିବ ନାରୀ ଅତ୍ୟାଚାର
ବିଦେଶୀ ସରବେ କରିବେ ବଖାଣି,
ନ ଗାଆନ୍ତୁ ନାରୀ ପୂର୍ବ୍ବ କାହାଣୀ,
ଉଠ ନବ ତେଜେ ଉଠ ଆର୍ଯ୍ୟ ପୁତ୍ର
ଯେପମାନେ ଅଛ ଅବଜ୍ଞାରେ ମୃତ,

ଜାଗ୍ର ହେଉ ଆଜ ଦିବ୍ୟ ଦୀପ୍ତିମୟୀ
ସ୍ୱାହା ଅନଳର ପାଶେ,
ବଜ୍ରଧାରୀ ବାମେ ଶକ୍ତିମୟୀ ଶଚୀ
ଦେବଙ୍କୁ ଗରବୋଲ୍ଲସେ;

ହେଉ ଅବତୀର୍ଣ୍ଣା ଉମା ଘରେ ଘରେ
ତ୍ରିଶୂଳଧାରିଣୀ, ବିଶାଳ ଦର୍ପରେ

ଯେ ଛୁଟିନେଉ ପାପ, ଦୈନ୍ୟ ସନ୍ତାପ
ଉଠୁ ଭାରତ ତା ପ୍ରାଚୀନ ଦର୍ପରେ

ମହା ମହିମାର ମହା ତପୋବନ
ହେବେ ରମଣୀ ନୈମିଷ କାନନ

ଭାରତର ବକ୍ଷେ ସ୍ୱର୍ଣ୍ଣ ଅଳଙ୍କାର,
ଦୂରେ ଯାଉ ଆଜ ଅମୃତ ଆନନ୍ଦେ
ନୈରାଶ୍ୟ ବିଷାଦ ଆର୍ତ୍ତ ହାହାକାର ;

ବରଷ ବରଷ ମହା ଛଳନାରେ

ମୃଣ୍ମୟୀ ପ୍ରତିମା ଷୋଡ଼ଶୋପଚାରେ
ଆଜ ନ ପୂଜିବେ ଋଷିର ସନ୍ତାନେ,
ଜୀବନ୍ତ ଜନନୀ ଚରଣ କମଳ
ଲଭିବ ଭକତି-ଆରତି ବିମଳ,
ଆଜ ନ ମରିବେ ମାତୃ ଅପମାନେ

ଘରେ ଘରେ ହେବ ମାତାର ପ୍ରତିଷ୍ଠା,
ବଢ଼ିବ ଶକତି ସାଧନାର ନିଷ୍ଠା,

ଭାରତ-ସଦନରୁ ମିଥ୍ୟାଗୃହ ଛାଡ଼ି
ଯିବ ଦୂରେ, ବହୁ ଦୂରେ,
ପୂତ ମାତୃ ତୀର୍ଥ ଗଢ଼ିବେ ରମଣୀ
ଭାରତର ଅନ୍ତଃପୁରେ ।
ବୀରପ୍ରସୂତା ହେବେ ବୀର-ପ୍ରସବିନୀ,
ଗେ ଅରୁନ୍ଧତୀ, ବଶିଷ୍ଠ ଶୋଭିନୀ,
ଯଶୋଦା କୁନ୍ତୀର ଯଶୋଗୀତେ ପୁଣି
ନିନାଦିବ ଆର୍ଯ୍ୟ କ୍ଷିତ,
ଶାନ୍ତ ଦେବସ୍ନେହ ଅଧରେ ଶ୍ରୀଅଙ୍କେ
ହେଜିବେ ପୁଣି ଅବାତ,
କୌଶଲ୍ୟା ସୁମିତ୍ରା ଶଚୀ ମାତା ଯାଁର
ସେ ଦେଶରୁ ଯିବା ଦେଶ ଅହଂକାର,
ଫେରି ତ ଆସିବେ ଶିବାଜୀ, ପ୍ରତାପ,
ନ କର ନ କର ବୃଥାରେ ବିଳାପ,
ଉଠିଥିଲୁ ଦିନେ, ପଡ଼ିଅଛୁ ତଳେ, ନ ହୁଅ ନିରାଶ ଭାଇ,
ଉଠିବୁ ଏଥର କେଶରୀ ଗର୍ଜନେ
ମାତାର ଉଦ୍ଧାର ପାଇ ।
ମାଆ ସେ ଆମର ଧ୍ୟାନ, ଆରାଧନା
ମାଆ ତ ଆମର ସର୍ବାର୍ଥ ସାଧନା,
ମାତୃନାମ ମନ୍ତ୍ର ଜପି ହୃଦତନ୍ତ୍ରେ
ଉଠବୁ ଭାରତ ଦୈନ୍ୟ ହରୁଣୀ,
ଉଠିବୁଁ ଏଥର ତେତିଶ କୋଟି,
ଆଜି ନତ ଶିରେ ନ ... ମନନା ।

ଗଲଣି ଆମର ଘନ ଜଡ଼ତାର,
ଅପସରି ଯାଏ ଧୀରେ ଅନ୍ଧକାର

(ଏବେ) ଭାରତର ବକ୍ଷେ ଏକ ମହାଲକ୍ଷ୍ୟ
ବନ୍ଧା ନରନାରୀ ପ୍ରାଣ
ମିଶି ଭ୍ରାତା ଭଗ୍ନୀ ଭୁଞ୍ଜାଇବୁଁ ପ୍ରାଣ-
ପଣେ ମାତୃ ଅପମାନ ।

ଉଦ୍ଧାରିବେ ପୁଣି ଭାରତର ଭୂମି
ଦୁର୍ଗା ଦଶ-ପ୍ରହରଣେ,
ମନ୍ଦିରେ ମନ୍ଦିରେ ପୂଜିବେ ସୁଗଳ
ମୂର୍ତ୍ତି ଲକ୍ଷ୍ମୀ ନାରାୟଣେ ।

ଈଶ୍ବର ପାବନ୍ତି ମିଶି ଦେବ ଅଙ୍ଗେ
ଶୋଭିବେ ଜାହ୍ନବୀ ବ୍ରହ୍ମପୁତ୍ର ସଙ୍ଗେ,
ଆଜ ଥରେ ଆର୍ଯ୍ୟ ଧରା,
ହୋଇବ ଅଖିଳ-ଅବନୀ-ବନ୍ଦିତା ନନ୍ଦନର ଫୁଲହରା ।



# କାମିନୀ ପ୍ରତି

ଯେବେ ଧୀରେ ଅସ୍ତାଚଳେ ଢଳିପଡ଼େ ରବି
କନକ କିରଣେ ରଞ୍ଜି ପ୍ରତୀଚୀ ବଦନ,
କ୍ଷୁଦ୍ର ଖଣ୍ଡ ମେଘାବଳୀ ନାନାରଙ୍ଗ ଛବି,
ଉଜ୍ଜ୍ୱଳ ଆକାଶ ତଳ ନୀଳିମା ଶୋଭନ ।

ଧୀରେ ଧୀରେ ବହିଆସେ ସାନ୍ଧ୍ୟ ସମୀରଣ,
ବହିଆଣେ ସୁଧାସ୍ୱର କେଉଁ ଦୂର ଦେଶୁଁ,
ପ୍ରଶାନ୍ତ ଅମ୍ବରରେ ଧୀରେ ଫୁଟେ ତାରାଗଣ,
ଜୁଳୁ ଜୁଳୁ ଚାହୁଁଥାନ୍ତି ସେ ଦୂର ଆକାଶୁଁ ।

ଧୀରେ କି ଓହ୍ଲାଇ ଆସେ ନଭେ ଅନ୍ଧକାର,
ଧୀରେ କି ଆଲିଙ୍ଗେ ଧରା ନିଶା ମନୋହାରୀ,
ଧୀରେ ନଭକୋଣେ ହସିଉଠେ ଶଶଧର,
ଧୀରେ ନୀଡ଼େ ବାହୁଡ଼ନ୍ତି ପକ୍ଷୀ ଧାଡ଼ି ଧାଡ଼ି ।

ସେକାଳେ ମୋ କୁଞ୍ଜବନେ କି ମନ୍ତ୍ରପରଶେ
ଜାଗିଉଠେ ସୁପ୍ତା ମୋର କାମିନୀ ସୁନ୍ଦରୀ,
ଘନନୀଳ ପତ୍ରକୁଞ୍ଜେ ମୃଦୁମନ୍ଦ ହସେ,
ବସନ-ଆବୃତା ଯୋଷା ହସେ ଯେଉଁପରି ।

ଉତ୍କଣ୍ଠାର ଚକ୍ଷୁଁ ଧରେ କ୍ଷୁଦ୍ର ଜବାପର
ପବନ ଆନନକାନ୍ତ ଶିର ବ୍ରୀଡ଼ାବନତ,
ଅବନତ ନେତ୍ରେ ହସେ ଆହା କି ସୁନ୍ଦର,
ଲଲିତା, କୋମଳା ବାଳା, ସୁବାସିତା, ସତୀ ;

ହସେ କଣ୍ଟକପୂ-ବାସ-ଆବୃତ ବଦନେ,
ସୁଶୁଭ୍ରା କାମିନୀ, ପୂତା, ଶ୍ୱେତ-ଶୋଭାନ୍ୱିତା,
ଫୁଟି ପତ୍ର ଅନ୍ତରାଳେ ଲୁଚେ ପତ୍ରକୋଣେ,
ପବନ ପରଶେ କ୍ଷଣେ କ୍ଷଣେ ଚମକିତା ।

ଶୀତଳ ମାରୁତେ ବହିଆସେ ଗନ୍ଧରାଶି,
ବହିଆସେ ଗନ୍ଧରାଶି ଆକୁଳ ମୋ ପ୍ରାଣ,
ଶୁଭ୍ର ଫୁଲ ପେନ୍ଥା ପେନ୍ଥା ମାଳ ପତ୍ରେ ମିଶି
ଲୁଚି କି ଦେଖାଏ ଲଜ୍ଜା ରମଣୀ ଭୂଷଣ ?

ସ୍ନେହର ଶିଶିରକଣା ଝରେ ଅନମ୍ବରୁ,
ସ୍ନେହ—ଅନ୍ଧକାର କୋଳେ ଆଲିଙ୍ଗେ ଯାମିନୀ,
ଜନକ ଜନନୀ ସ୍ନେହ ସମ ପୂତ, ଗୁରୁ,
ଲଭି ଶାନ୍ତ ଗୁଣେ ତୋର ଧନ୍ୟ କି କାମିନୀ ?

ପତ୍ର ଗହ୍ୱଳରେ କିନ୍ତୁ ଭେଦି ଅନ୍ଧକାର
ଚନ୍ଦ୍ରମା ଚୁମ୍ବନେ ତୋତେ ଚୁମ୍ବେ ଚାରୁଚନ୍ଦ୍ର,
ଥରେ ତୋର କ୍ଷୁଦ୍ର ବକ୍ଷ ପ୍ରେମେ ଥର ଥର,
ପରଶେ ଚନ୍ଦ୍ରମା ଯେବେ ପତ୍ର ଛିଦ୍ର ରନ୍ଧ୍ର ।

ମୃଦୁବାତ ବିକମ୍ପିତା, କାମିନୀ କୋମଳା,
ସତେ କି ପ୍ରେୟସୀ ବାର୍ତ୍ତା ଚନ୍ଦ୍ର ସମୀପରୁ
ଆଣି କାନେ କହିଯାଏ, ରମ୍ୟ ଲଜ୍ଜାଶୀଳା,
ତୋତେ ସମୀରଣ, ତେଣୁ ପ୍ରେମାବେଶେ ଥରୁ ?

ଶରାନତ ତୋ ବଦନ, ନାହିଁ ମୁଖେ କଥା,
ସରଳତା ଜାଣି ତୋର ହରକ ସମୀର,
ତୋହର ସୁରଭିରାଶି, ଜାଣି ଚନ୍ଦ୍ର ବ୍ୟଥା,
ସଜାଡ଼ି ଝଅଇ ସ୍ନେହ ଶ୍ରଦ୍ଧା ଉପହାର !

ଜାଣି ତୋତେ ଲଜ୍ଜାବତୀ ତେବେ ମିଛେ ମିଛେ
ପଶଇ ଶଶାଙ୍କ ତୋର ପତ୍ର ଆବାସରେ,
ସୁନ୍ଦର ସୁନ୍ଦରୀ ପ୍ରତି, ଆଦରଇ ସ୍ୱଚ୍ଛେ,
ଗୁଣ ଚିହ୍ନେ ଗୁଣୀ, ଏ ତ ଚଳିତ ଭବରେ !

ଚନ୍ଦ୍ର ଶ୍ୱେତ ଚିତ୍ତ ମିଶେ ତୋର ଶ୍ୱେତା ଚିତ୍ତ,
ସୁନ୍ଦରୀ ପରଶେ ବାଳା ହରଷେ ଅପସରା,
କହୁନାହିଁ କଥା, କାନ୍ତ ଚିର ମୌନବ୍ରତ
କରେ ତୋର ଶୁଭ୍ରତନୁ ଶତଗୁଣେ ଗୋରା ।

ଯେତେ ପନବାସେ ଭୁଞ୍ଜି ଆବରୁ ବଦନ,
ତେତେ ତୋ ସୁରଭି ରାଶି ଚହଟି ଚୌଦିଗେ,
ଦିଏ ତୋର ପରିଚୟ କାମିନୀ ସୁମନ !
ଲୋକେ ତୋଳିବାକୁ କେତେ ଆଦରେ ଧୁଆଁଗେ ।

କେତେ ଥର ଡାକେ ତୋତେ କାମିନୀ ସୁନ୍ଦରୀ !
ଜଗତରେ ନାରୀତ୍ୱର ଶୁଭ୍ର ନିଦର୍ଶନ,
ନାରୀର ସୌନ୍ଦର୍ଯ୍ୟ ଲଜ୍ଜା, କୋମଳତା ଶିରୀ,
ଶୁଭ୍ର ପବିତ୍ରତା ତା'ର ଜୀବନେ ରତନ ।

ଲୁଚି ପତ୍ର ଅନ୍ତରାଳେ ବାସ ବିତରଣେ
ଶିଖାଉ କି ରମଣୀର ଗୃହଧର୍ମନୀତି,
ସଂସାର ଆଶ୍ରମେ ନାରୀ କର୍ତ୍ତବ୍ୟସାଧନେ
ଲଭଇ କଲ୍ୟାଣ ଚିର ପବିତ୍ର ଜୀରତ ।

କେତେ ଫୁଲ ପେନ୍ହା ପେନ୍ହା ତୋଳେଁ ଫୁଲ୍ଲମନେ,
ସଜାଇବି ବୋଲି ମୋର କ୍ଷୁଦ୍ର ନିକେତନ,
ଫୁଟେ କି କାମିନୀ ଫୁଲ ମୋ କ୍ଷୁଦ୍ର ଜୀବନେ
ପବିତ୍ର କରି ତା ବାସେ କଳୁଷିତ ମନ !

ଯେବେ ନିଶାଯାମେ ବସି ବାତାୟନ ପାଶେ
ପଠନେ ମଗନ ମୋର ଅବଶ ପରାଣ,
କ୍ଷଣକେ ହୁଅଇ ମୁଗ୍ଧ କାମିନୀ ସୁବାସେ
ବହିଆଣେ ସେ ସୁବାସ ନୈଶ ସମୀରଣ ।

ଅନ୍ଧାରେ ଫୁଟି ତୁ କରୁ ବାସ ବିତରଣ,
ଦିବାରେ ଆଲୋକେ ମ୍ଳାନ ହୋଇ ହତଶିରୀ,
ପଡ଼ିଥାଉ ତରୁତଳେ, କରେ ଆହରଣ
ମଳିନ ସେ ପୁଷ୍ପରାଶି ସ୍ନେହାଞ୍ଜଳି ଭରି ।

ଅନ୍ଧାରେ ମହିମା ତୋର, ଗୋପନେ ତୋ ଶିଖ
ପଥ କୋଣେ, ଗୁଚ୍ଛେ ଯଥା ନାଗ ଗୁଣବନ୍ତ,
ପ୍ରାଣର ଆଦର ସ୍ନେହ ସୁଗନ୍ଧ ଭରଣ
ତାଳେ ଶତ ପ୍ରାଣେ ଶାନ୍ତି, ପବିତ୍ର ପୀରତି ।

ଗୃହିଣୀ ପରଶେ ଫୁଟି ହସୁ ତୁ ଲଳିତା,
ଶିଖାଉ କି ପତି ତୋର ସର୍ବସ୍ୱ ଜୀବନେ,
ପତିର ଆଦର ସ୍ନେହ ଲଭି ପତିବ୍ରତା
ରହେ ପଦେ ଶରଣତ ପବିତ୍ର ବଦନେ ।

ବର ଦେ ତୋ ପରି ମୋତେ କାମିନୀସୁନ୍ଦର,.
କରପୂତ ସୁବାସିତ ମୋ କ୍ଷୁଦ୍ର ହୃଦୟ,
ତାନ୍ତୁ ପ୍ରତିପାଣେ ପ୍ରେମପୂତ ଶାନ୍ତିବାରି,
ହେଉ ମୋ ଭୂଷଣ ଲଜ୍ଜା, ନମ୍ରତା, ବିନୟ ।



# ଶ୍ରୀଛାମୁ

ଯେ ଦିନ ଅନ୍ଧାରେ ଶୁଭ୍ର ତୁଷାରେ
କମ୍ପୁଥିବ ଶୀତ ନିଶୀଥେ,
ଜାଳୁ ଜଳୁ ତବ କ୍ଷୁଦ୍ର ପ୍ରଦୀପ
ଗୃହ ଏ ଚତ୍ୱେ ସ୍ତିମିତେ ।

ଯେ ଦିନ ରୁଦ୍ର ରୌଦ୍ର ଦହନେ
ବୁଲୁଥିବ ତୃଷା ଘର୍ମରେ,
କ୍ଷୁଦ୍ର ତୁମର କୃପା ଝରଣାର
କଳଧୌତ ବାଜୁ ମର୍ମରେ ।

ଯେ ଦିନ ମାରବ ରୋଗ ଶେଯେ ପଡ଼ି
ନୟନ କାନ୍ଦିବ ରୁଧିରେ,
ଅଲକ୍ଷିତ ହାତେ ଛୁଇଁଯାଅ ମୋତେ
ସ୍ନେହୀ ସଖା ସମ ସୁଧୀରେ ।

ଯେ ଦିନ ଭିକାରୀ ପରାଏ ବୁଲିବି
ହକାରି ଦୁଆରେ ଦୁଆରେ,
ଭୁଲି ଲଜ୍ଜାର ମେଲ ଥାଉ ପ୍ରଭୁ
ଦାନ ଦୁଃଖୀତର ଆଗରେ ।

ଯେ ଦିନ ଭୀଷଣ ରଣ ପ୍ରାଙ୍ଗଣରେ
ଏକା ହୋଇଥିବ ଛୁଡ଼ା ମୁଁ,
ଶତ କରେ ଶସ୍ତ୍ର ଧରି ବାହାରିବ
ଶତ ଶୀର ବେଶେ ଶ୍ରୀଗୁରୁ ।

ଯେ ଦିନ କଠିନ କାରା ନିଗଡ଼ରେ
ଦୃଢେ଼ ହୋଇଥିବ ବନ୍ଧନ,
ନନ୍ଦନାଶନ ଚକ୍ର ଭ୍ରମରି
କରୁ ତାହା କ୍ଷଣେ ଛେଦନ ।



# ନରନାରାୟଣ

ତୁମେ ଏଇ ପଥେ ଯିବ ବୋଲି
ସାରା ରାତି ଧରା ଥିଲା ଉଜାଗର,
ରଖିଲା କବାଟ ଖୋଲି ।

ବଡ଼ଇ ସୁନ୍ଦର ମୋହନ ଲୀଳା
ଆକାଶେ ଅମିୟ ଆଲୋକ ମେଳା,
ସୂର୍ଯ୍ୟ ଚନ୍ଦ୍ରାତପ ଥାପି, ଅନନ୍ତ ଦିଗନ୍ତ ବ୍ୟାପୀ
କୋଟି ତାରାଦୀପେ ମଙ୍ଗଳ ଆଳତି ଜାଳି ।

ହୃଦ ଉଲ୍ଲାସର ବାସ ବିକଶାଇ
ଫୁଟାଇ କୁସୁମ ମାଳି ।

ନିଖିଳ ଜାଗିଲା ତୁମରି ପାଇଁ
ମହା ମହାମହିମଙ୍କୁ ଥିଲା ଅନାଇଁ,

ବହିଲା ସୁବାସ ମଳୟ ମନ୍ଦେ,
ଗାଇଲେ ବିହଙ୍ଗ ଲଳିତ ଛନ୍ଦେ
ତବ ସ୍ତବ ସ୍ତୁତି ବନ୍ଦନା
ନବ ଧାନ, ଦୂବ ଚନ୍ଦନ ଦେଇ
ସଜାଡ଼ିଲା ଅର୍ଘ୍ୟ ଥାଳି ।

ତୁମେ ଗଲ କେଉଁ ପଥେ
କେହି ନ ଜାଣିଲ ସତେ,

ଦରିଦ୍ର ଇତର ବେଶେ ଦ୍ୱାରେ ଦ୍ୱାରେ
ପଡ଼ିଲ ଶ୍ରୀପାଦ ଧୂଳି,
ଶତ ଛିନ୍ନ ତବ ଭିକ୍ଷାର ଥଳୀ
ପୂରିଇଲ ବୁଲି ବୁଲି,
କେହି ନ ଚିହ୍ନିଲେ ନରନାରୀପୂର୍ଣ-
ଛଦ୍ମେ ପ୍ରେମ ଦେଲ ଢାଳି।



# କୃଷକ ପୁଅ

କୃଷକ ଘରର ପୁଅ ମୁଁ କୃଷି ମୋ ବ୍ୟବସାୟ
ମୋ ସମା ଅଛି କେ ଜଗତେ କା ବଞ୍ଚିବା ଉପାୟ ?

ସୁନ୍ଦର ଶାଗୁଆ କ୍ଷେତରେ ଧାନ, ମୁଗ, ଗହମ,
ପାଚିଲା କିଆରୀ ଦେଖିଲେ ଉଲ୍ଲସିତ ମରମ ।

ମୋ ହଳ ଲଙ୍ଗଳ ପାଦରେ କମଳାଙ୍କ ନିବାସ
କୃଷି ଅଛି ଘରେ ଯାହାର ଦେଶେ ତାହାର ବାସ ।

କିନ୍ତୁ ଆଜ କାହିଁ ମୋ ବାପ ଏ ଦୂର ବିଦେଶରେ,
କୃଷି ଛାଡ଼ି କରେ ଚାକିରୀ ଥାଇ ପର ବଶରେ ।

ଦଶ ପୁରୁଷରେ ଗୋଲାମ କେହି ନ ଥିଲେ ଜଣେ,
ବନ୍ଦୁଥିଲା ସୁନା କଳସ ଧାନ ଲକ୍ଷ ଭରଣେ ।

ସେ ଲକ୍ଷ ଭରଣ କଥା ତ ସପନର କାହାଣୀ
କୃଷି ଜମି ମାଣେ ନାହିଁଟି, ଘରେ ପାଞ୍ଚ ପରାଣୀ ।

ମରୁଥିବେ ଭୋକ ଉପାସେ, ମୁଁ ଦୂର ବିଦେଶରେ,
ମୋ କମେଇ ମୋତେ ନିଅଣ୍ଟ, ଧନ କାଟେ କଷ୍ଟରେ ।

ବଳର ଖଜଣା ଲଗି ମୁଁ ଥାଳୀ କଂସା ବିକିଲି
ବୁଢ଼ା ହଡ଼ା ବିକି ସାହୁର ସୁଧ ମୂଳ ଶୁଝିଲି ।

ଘରପା ହାତର ଖଡ଼ୁକୁ ବନ୍ଧା ପକାଇ ଆଣି
ଠଙ୍କା ଦଶଟାରେ ଚଳିଲି ପିଇ ପେଜ ତୋରାଣି ।

ଆଖର ମା ଘରେ ରହିଲା ନାହିଁ ଫଟା କଉଡ଼ି,
ଭାବିଲି ଏଥର ଗଳାରେ ଦେବି ଅବା ଦଉଡ଼ି ।

ସେହି ସମୟରେ ଗୋବିନ୍ଦା ଆସିଲା କଲିକତା,
କଲିକତା ରୋଜଗାରର କହିଲା କେତେ କଥା ।

ତା କଥାରେ ସିନା ବାହାରି ଅଇଲି ମୂର୍ଖ ପଣେ,
ଆଜି କିଏ ଅଛି ଜଗତେ ମୋ' ଭଳି ଦୁଃଖୀ ଜଣେ !

ବୋଝ ବୋହି ବୋହି ମୋହର ପିଠି ଗଲାଣି ଫାଟି
ମାଡ଼ ଗାଳି ଭୋକେ ଗଲାଣି ଶୁଖି ପଞ୍ଜରା କାଠି ।

ଘରକୁ ପଠାଇ ଅଧିକ, ଅଧିକ କମେଇରେ
ଧନ କାଟେଁ, କିଛି ଉଡ଼ାଏଁ ଅଫିମ ଗଞ୍ଜେଇରେ ।

ମୋର ଯେତେ ସଙ୍ଗୀ ସଙ୍ଗାତ ସବେ ଧରମ ହୁଡ଼ା,
ନାନା ମନ୍ଦ କର୍ମ କରି ସେ ସହଜେ କୁଳବୁଡ଼ା ।

ତାଙ୍କ ସଙ୍ଗେ ପଡ଼ି ଦୁଷ୍କାର୍ଯ୍ୟେ ଯାଉଛି ଦିନ ରାତି,
ଥରେ ଥରେ ନିଜ ଦୁର୍ଦ୍ଦଶା ଭାବି ବିଦାରେ ଛାତି ।

ହା ଅନ୍ନ ହା ଅନ୍ନ କରି ମୁଁ ବିଦେଶେ କେତେ କାଳ,
ନରକର କୁଣ୍ଡ ଘାଣ୍ଟିବି ମନ୍ଦ ଥିବ କପାଳ ।

କୃଷକ ଘରର ପୁଅ ମୁଁ କୃଷି କରି ବଞ୍ଚିବି,
କୁଲି କାମ କରି ବିଦେଶେ କମ୍ପା ମୁଣ୍ଡ ଗୁଞ୍ଜିବି ?

ନିଜ ସୁନା ଖଳା ଭୂଇଁକି ଫେରିଯିବି ଏଥର,
କୃଷି ବାସ କରି ସୁଖରେ କରିବି ପୁଣି ଘର ।

ଜନନୀ ଜନ୍ମ ଭୂଇଁ ତ ସ୍ୱର୍ଗ ବଳି ମହାନ,
ଯେଣୁ ମାଟି ମୋର ସମ୍ପତ୍ତି ମୁଁ ତା ପ୍ରିୟ ସନ୍ତାନ ।

ମୋହର ଲଙ୍ଗଳ ଫାଳରେ ଲକ୍ଷ୍ମୀ କରିବେ ଘର,
ଅମାର ଅମାର ଧାନରେ ପୂରିଯିବ ଏଥର ।

କୁଲି ଗିରି କରି ଦେଶକୁ ଆଉ ନ ଦେବି ଲଜ୍ଜା,
କୁଲି ଗିରି କଲେ ଏଥର ଦେଇବି ମାଟି ଶଯ୍ୟା ।

ପଛେ ସେ ମାଟିର ଶେଯରେ ହାଡ଼ ମୋ' ମିଶିଯାଉ,
ତଥାପି ଓଡ଼ିଆ ଭୂଇଁର ଟେକ ଜଗତେ ଥାଉ ।

ଓଡ଼ିଆ ଚଷାର ପୁଅ ମୁଁ, ମୁଁ ତ ମାଟି ସେବକ,
ମୋହର ବଳିଷ୍ଠ ବାହୁରେ ନିତି ପ୍ରଜାପାଳକ ।

ଦରିଦ୍ର ବୋଲି ମୁଁ ମୋ' ଦେଶ ଦରିଦ୍ର ବୋଲାଉଛୁ,
ମାଟିକୁ କରିବି ସୁନା ମୁଁ ମନେ ଆଶା ବାନ୍ଧୁଛି ।



# ଆତ୍ମବଳ

ଝରର ଆର୍ତ୍ତନାଦ ବେଦନା କାହାଣି
କଣ୍ଠେ ଦିଅ ମୋର ଗୀତ,

ଶୁଣୁ ଚରାଚର ମୋ ବଂଶୀ ଝଙ୍କାର
କରୁ ତା ନବୀନ ନନ୍ଦନ ।

ମାୟା ଜାଲ ବୁଣା ଶେଷ ହେଉ ମୋର,
ଗୁନ୍ଥି ଦେବେ ଫୁଲ ମାଳ,

ଶର ଅଶ୍ରୁ ଘାରି ଶୁଷ୍କ ହେଉ ମୋ'
ହର୍ଷଧାରା ଦିଏଁ ଢାଳି ।

ଦୀର୍ଘ ଅଳସ ଦିବସ ଯାମିନୀ
ପୂରିଉଠୁ କର୍ମ କୋଳାହଳେ,

ଶକ୍ତି ପ୍ରାର୍ଥନା ଲଭୁ ପ୍ରତିଷ୍ଠା
ନିର୍ଭର ପୂର୍ଣ୍ଣ ଆତ୍ମବଳେ ।



# ମିଳନ

କର ଦୂର କର ଦୂର ସରମର ଆବରଣ,
ଅଙ୍ଗେ ଅଙ୍ଗେ ମୋର କର ଆଲିଙ୍ଗନ,
ହିଆରେ ଥୁଅ ଶ୍ରୀଚରଣ ।

ଗୋଟା ତନୁ ମୋର ଚିର ତୃଷାତୁର,
ସହିବ କେତେ ସେ ବ୍ୟସନର ଘାର,

ନିତି ଲୁଚେ ଲୁଚେ କେତେ ମରୁଥିବ,
ପାଇବାର ଆଶା ନ ପାଇ ଘୁରିବ,
ଲୋକ ଲୋକାନ୍ତରେ କେତେ ଭ୍ରମୁଥିବ
ସହିବ ଜନମ ମରଣ ।

କାହିଁ ଏ ସାଧନା, କାହିଁ ଏ ବେଦନା,
କହିବା କହିବ ନ ଫୁଟେ ରସନା,

କେତେ ଦୂରେ ଦୂରେ ରହିଥିବ ଆଉ,
ସହିବ ବିଚ୍ଛେଦ କଷ୍ଟରେ ଦାଉ,
(ଏବେ) ନିଅ ପ୍ରିୟ ପ୍ରେମ ମିଶି ମୋ ମାନସେ,
ନର ହେଉ ନାରାୟଣ ।



# ନିସ୍ୱାର୍ଥ

ନିଜ ସ୍ୱାର୍ଥ ଚିନ୍ତା ଜଗତ ଯେତନ
ଦେବ ମୋତେ ଶତ ପୀଡ଼ା,
ଦୁର୍ବଳ ଭାରେ ସ୍ପର୍ଶି ନ ପଡ଼ିବ
ଦୃଢ଼ ପଦେ ଦେବ ଛିଡ଼ା।

ଆନ ଲାଗି ଯେବେ ସହିବ ମୋହର
କଷ୍ଟ ସଞ୍ଚିତ ଶତ,
ଆପଣାର ଇଷ୍ଟ ମଣି ତା ଗୁପତେ
ହେବ ଆନନ୍ଦିତ ଚିତ୍ତ।

ଆନର ଆସନେ ବସାଇ ଯେବେ
ଭାଗ୍ୟ ଦେବତା ସୁଖେ,
ନିଜ ବକ୍ଷ ଘଟେ ରକ୍ତ ନିର୍ଝରେ
ଆନ ହେବେ ନତ ମୁଖେ,

ନିଜ ଲାଜ ଯେବେ ଗ୍ରାସିବ ମରମ
ଆନେ ନ ମଣିବ ଲଜ୍ଜା,
ଆନର ଘଟନେ ନ ହସିବି କେବେଁ
ନିଜକୁ ଲକ୍ଷଣ ଭାବ।



# ଅମୃତ ସନ୍ତାନ

ବିନାଶ ମୋହର ନୁହଇ ତୁମର
ପ୍ରେମମୟ ଅଭିପ୍ରାୟ,
ରହିଛି କୌଶଳେ କଳେବର ମମ
ଗୁରୁ କାନ୍ତିକଳା ପ୍ରାପ୍ତ ।
ନୟନେ ମୋହର ଶତ ସୂର୍ଯ୍ୟ ପ୍ରଭା,
ଅଙ୍ଗେ ଅଙ୍ଗେ ରମ୍ୟ ନନ୍ଦନର ଶୋଭା,

ବାହୁରେ ଅସୀମ ଅଜେୟ ଶକତି
ହୃଦୟେ ବିଶାଳ ଭକତି,
ଶତ ଶୋକ ଜରା ଘେରିଛି ମରଣ,
ତଥାପି ନୁହେଁ ମୋ କ୍ଲାନ୍ତ ଚରଣ,
ଜନମେ ଜନମେ ନବ ନବ ବେଶେ
ଧରେ ନବ ନବ କାୟ ।

ଚିର ବିକାଶ ମୋ ଜନ୍ମ ଅଧିକାର,
ଚିର ମୁକ୍ତ ମମ ଉନ୍ମୁକ୍ତ ଦୁଆର,
ଅମୃତ ସନ୍ତାନ ତୁମର ମୁଁ ତାତ,
ନିର୍ମଳ, ପୂତ, ଅବଦାତ,

ପାତକ କଳଙ୍କ ନରକ-ନଗରେ
କେତେ ଧନ ବନ୍ଧାଥିବ ହେ ନବରେ ?

ଧୂଳିରେ ଧୂସର କାହରେ କପାଇଁ
କରୁଥିବ ହାସ୍ୟ ହାସ୍ୟ !

ଛାର ଅବା ମୋତେ ମାର,
ଏତକ ମୋ ଅହଙ୍କାର,
ତବ ବଡ଼ ପଣେ ଊଣା ଯା ମୋ' ଠାରେ
ପୂର୍ଣ୍ଣ ହେବ ସାରହସାର୍ ।



# ଆହ୍ୱାନ

ସେନାପତି ଆଜ ଦେଇଛନ୍ତି ଡାକ,
ଉଠ ଭାରତର ବୀରପୁତ୍ର ଯାକ ।

ଅପୂର୍ବ ଅହିଂସଯୋଗ ରଣାଙ୍ଗନେ
ଆସ୍ତେ ଆସ୍ତୋ କସି ପରି ଜଣେ ଜଣେ ।

ଭାରତର ଯେତେ ବୀର ଗୁଣମଣି
ଚଳିଆସ ସେନାପତି ଡାକ ଶୁଣି ।

ଗାନ୍ଧୀ ଯୋଗୀବୀର ତୁମର ଅଗ୍ରଣୀ,
ଶିବ ସୁର ଉଠ ତରୁଣ ତରୁଣୀ ।

ନାହିଁ ଏଥି ଲେଡ଼ା ବନ୍ଧୁକ, କମାଣ,
ହତିଆର ଏଠି ଏକା ତୁମ ପ୍ରାଣ ।

ତୁମ ରକ୍ତବିନ୍ଦୁ ଗୁଳି ବାରୁଦର,
ଏହି ଅସ୍ତ୍ର ଆଜ ହୁଅ ହେ ହାଜର ।

ସେନାପତି ତବ କଲେଣି ଆହ୍ୱାନ,
ଆସ ଆଗେ କଏ ଦେବ ପ୍ରାଣଦାନ ।

ଆସ ଏକ ସଙ୍ଗେ ହିନ୍ଦୁ, ମୁସଲମାନ,
ଶିଖ୍, ପାର୍ଶୀ, ବୌଦ୍ଧ, ଇହୁଦୀ, ଖ୍ରୀଷ୍ଟାନ ।

ଏହି ହିନ୍ଦୁସ୍ଥାନେ ତୁମ ବାସସ୍ଥାନ
ତାର ଅପମାନେ ତୁମ ଅପମାନ ।

ଧର୍ମ ଯୁଦ୍ଧ ତବ ଆସିଛି ଆହ୍ୱାନ
ବାଜେ ରଣଶିଙ୍ଗା ଶୁଣ ଦେଇକାନ ।

ଭସ୍ମ ଢଙ୍କା ତେଜ ଉଠ ବଡ଼ସାନ
ଆତ୍ମବଳେ ଆଜି ମହା ବଳବାନ ।

ଅମିତ ବିକ୍ରମେ ଅସୁର ଦଳନ
ଆତ୍ମ ଦର୍ପେ ଉଠ ବୀର ଅରିନ୍ଦମ ।

ଉଠ ଭାରତର ସେନା ନାରାୟଣୀ
ଗାନ୍ଧୀ ବିଷ୍ଣୁରୂପୀ ତୁମର ଅଗ୍ରଣୀ ।

ଭାରତ-ତରୁଣ ଭାରତ-ସମ୍ବଳ
ତେବେ ମୂର୍ତ୍ତିମନ୍ତ ପୂତ ହୋମାନଳ ।

ଭାରତ-ଭରସା ଭାରତ-ସଙ୍ଗାଳ
ଉଠ, ଡାକେ ଦେଶ, ପ୍ରାଣଦିଅ ଢାଳ ।

ଅସ୍ତ୍ରଧାରୀ ସଙ୍ଗେ ନିରସ୍ତ୍ର ସଂଗ୍ରାମ
କହ, କେବେ କାହିଁ ଶୁଣି ଥିଲ କାନ ?

ପଶୁତ୍ୱ ବଳରେ ଝଣ୍ଡ୍ରାନ କାରଣେ
ଧରିବନ୍ଧୁ ଅତ୍ୟାଚାର ନିବାସନେ

ଅସୁର ବଳକୁ କରିବାକୁ ନାଶ
ସହାୟ ତୁମର ପ୍ରଭୁ ଶ୍ରୀନିବାସ ।

ମୋହନ କରମଗ୍ନ ମହାପନ୍ତ
ଧର୍ମଯୁଦ୍ଧ ତବ ଆଜ ସେନାପତି,

ଧର୍ମବାନାଧାରୀ ନିରସ୍ତ୍ର ନିର୍ଭୀକ,
ଉଠ ଭାରତର ଯୁବକ ସୈନିକ ।

ରଣେ ତୁମ ଆଗେ ଯିବେ ଜଗନ୍ନାଥ,
ଚକ୍ରେ ଖଣ୍ଡିବେ ସହସ୍ର ଉତ୍ପାତ ।

'ଜୟ ମା ଲକ୍ଷ୍ମୀ' ଉଚ୍ଚେ ଦେଇଡାକ
ଉଠ ଭାରତର ବୀରପୁତ୍ର ଯାକ ।

ଆଜ ଧର୍ମ ଯୁଦ୍ଧେ ମହା ଅଭିଯାନ
ବାଜେ ବଜ୍ରଘଣ୍ଟି, ଶୁଭେ ବଜ୍ରଗାନ,

କୁମାରକାଠାରୁ ହିମ ଗିରିଯାଏ
ଗଗନ ପବନ ସେ ତାନ କମ୍ପାଏ ।

ଅଛୁ କିଏ ବୀର ଭାରତ ସନ୍ତାନ,
କାହା ବକ୍ଷେ ବାଜେ ଅଗ୍ନେୟ ଆହ୍ୱାନ ?

ତାତିଲାଣି କା'ର ରକ୍ତ ଶିରେ ଶିରେ
ବିଜୁଳି ଚମକେ କାହା ଧମନୀରେ ?

ବୀର ଗର୍ବେ ନାଚିଉଠେ କା'ର ଚିତ୍ତ
ଦେଶପ୍ରେମ ମଦେ କେ ଉଠିଛୁ ମାତି ?

କାହା ପ୍ରାଣେ ଜାଗେ ଦେଶାତ୍ମ-ସମ୍ମାନ,
କରିବ କେ ତା'ର ଲଗି ଆତ୍ମଦାନ ?

ଶକ୍ତହାଡ଼ କା'ର ବଜ୍ରଠାରୁ ଟାଣ,
ସୁଖେ ହସି ହସି କେ ଦେଇବ ପ୍ରାଣ ?

ତୁମ ଭାଗ୍ୟରବି ଉଇଁବ ଏଥର,
ସମସ୍ତ ଆସିଲା ଭାଗ୍ୟ ପରୀକ୍ଷାର ।

ଜୟଚନ୍ଦ୍ର ଠାରୁ ମୀର୍ଜାଫର ଯାଏ
ଅଗଣିତ ବାରତା ଚିତ୍ତ ଚମକାଏ ।

କରିଥିଲେ କାର୍ଯ୍ୟ ବିଶ୍ୱାସହନ୍ତାର,
କରିବ ଏଥର ତା'ର ପ୍ରତିକାର ।

ହସି ହସି ପ୍ରାଣ ଦେବକି ହେ ଭାଇ,
ହିନ୍ଦୁସ୍ଥାନ ସ୍ୱାଧୀନତା ଗୀତ ଗାଇ ।

ଭାରତମାତାର ବୀରପୁତ୍ର ଗଣ,
ରଣସ୍ଥଳ-ଧୂଳି କର ଆଲିଙ୍ଗନ ।

ଶାନ୍ତ ଅସ୍ତ୍ର ତବ ଏ ଶାନ୍ତସମରେ,
ବକ୍ଷ ମେଲି ଠିଆ ହେବ ଅକାତରେ ।

ଖୋଲ ଛାତିପରେ କମାଣ, ବନ୍ଧୁକ,
ଦେଖାଇବେ କେତେ ଗୁଳିର କନ୍ଦୁକ ।

ହଣା ହେବ ଯାର ଶିର ଗୋଟି ଗୋଟି,
ତୁମ ରକ୍ତ ଭୂଇଁତଳେ ଯିବ ଲୋଟି ।

ଗଙ୍ଗାଧାର ସଙ୍ଗେ ରଙ୍ଗା ଧାର ମିଶି,
ପୋଛିଦେବ ଦୁଃଖ ଅତ୍ୟାଚାର ରାଶି ।

ପୂର୍ବକୃତ ପାପ ତହିଁ ଯିବ ଭାସି,
ଉଠିବ ଆଲୋକ ଅନ୍ଧକାର ନାଶି ।

ଆଜନ୍ମ ଅପମାନ ତପ୍ତ ଅଗ୍ନିକୁଣ୍ଡ,
ମୁଣ୍ଡମାଳା ତବ ହେବ ତହିଁ ରୁଣ୍ଡ ।

ପୁରୋହିତ ନିଜେ ଗାନ୍ଧି ପଦ୍ମାସନେ,
କେ ଦେବ ଆହୁତି ଆସ ହେ ନନ୍ଦନେ ।

କେତେ ବେତମାଡ଼, କେତେ କାରାବାସ,
ଦ୍ୱୀପାନ୍ତର, ରାଜ୍ୟାନ୍ତର, ପ୍ରାଣନାଶ,

କ୍ଷୁଧା, ହରତାଳ, ପୋଲିସର ଲାଠି,
ମୁଷ୍ଟିପଦାଘାତ ମିଳିବ ଏକାଠି ।

କମ ନୋହିବ ହେ ଯନ୍ତ୍ରଣା ତୁମର,
ସହିବାକୁ ଆଗେ ହୁଅ ଅଗ୍ରସର ।

ଏବେ କି ଯନ୍ତ୍ରଣା ନ ସହୁଛେ ଭାଇ,
ଅନ୍ନବସ୍ତ୍ର ବେନି ନେଲେ ଯେ ଛଡ଼ାଇ ।

ଦୁର୍ଭିକ୍ଷ, ଦାରିଦ୍ର୍ୟ, ବନ୍ୟା, ରୋଗଦାଉ,
ଋଣ, କରଭାର ସାରେ ତୁମ ଆୟୁ ।

ନାହିଁ ଯେ ଭାରତ ଦେବତା ବାଞ୍ଛିତ,
ଆଜ ଅନାଥିନୀ ଜଗତେ ଲାଞ୍ଛିତ ।

ହିମାଦ୍ରି, ମାଳାବାର୍ ଯା'ର ବେନି ସୀମା,
ଯା'ର ଜଗନ୍ନାଥ ପ୍ରଭୁଙ୍କ ମହିମା ।

ବେଦ ମେରୁ ପରି ଲଭିଛୁ ପ୍ରତୀତି,
ଯା' ନାଉଁସ ପୁଅ ଲଭି ପାରିବାର ।

ଯାଗ, ଯଜ୍ଞ, ହୋମ, କୋଷ୍ଠି ଓ, ଜାତକ,
ମାଲସୂ, ସୂମାସା, ଚୀନେ ଦେଲ ଜ୍ଞାନ ;

ଅରଘ ଚନ୍ଦନ, ଧାନ, ଦୁବ, ଘିଅ,
ସୁନାଥାଳି ସାଜ ଯା' ପାଖବ ଝିଅ ।

ବାପ ଭାଇଙ୍କର ବନ୍ଦାଏ ବୋଇତ,
ଭଙ୍ଗା ଖଞ୍ଜରୀର ଗୀତ ଏ ଅମୃତ ।

ଯା' ଅମ୍ବର ଛନା ଲକ୍ଷ ଭରଣରେ,
ବର୍ଷୁଥିଲ ସୁନା କଳସୀ ପୂର୍ବରେ,

ନାଗ ଥିଲେ ଯା'ଙ୍କ ଧନୁକଧାରିଣୀ,
କୋଟି କାରୁକଳ-ଲୀଳା-ତରଙ୍ଗିଣୀ,

ସେ କୃଷୀ, ଶିଳ୍ପୀଙ୍କ ଦୁର୍ଦ୍ଦଶାର କଥା,
ଭାବଲେ କା ହୃଦେ ନ ହେବଟି ବ୍ୟଥା ?

ଯେଉଁଠେ ନାହିଁ ଖାନା, ଦେହେ ନାହିଁ କନା,
ଦାନବୀୟ ରୋଗ, ଚିକସ ଭାବନା,

ତଖାଳ ଚେଣ୍ଡାକୁ କିଏ ନାହିଁ ଲୁଣ,
ବାର୍ଦ୍ଧକ୍ୟା କଷ ଯୌବନର ଗୁଣ ?

ଅପୂର୍ବ ରଚନା ଶାସନ ପ୍ରଣାଳୀ,
ଦେବେ କିଣ କୋଟି ଯା' କବଳେ କାଙ୍ଗାଳୀ ।

ମୁହେଁ ମିଠା ପେଟେ ଶାଣଦିଆ ଖୁର,
ଛଳ ବ୍ୟବସାୟୀ ଦୁର୍ବୁଦ୍ଧି ଚତୁର ।

ନିଜ ଦେଶେ ଆଜ ଆମେ ନିର୍ବାସିତ,
ବାଘ ହାବୁଡ଼ରେ ମୃଗଭଳି ଭୀତ ।

ଗ୍ରେଟ୍ ବ୍ରିଟେନ୍ ଯେ ଭୁଷାର ପ୍ରଧାନ,
ନାହିଁ ତହିଁ ବହୁ ଶସ୍ୟ କ୍ଷେତ୍ରମାନ ।

ଖାଦ୍ୟ ଯା' ନିଅଣ୍ଟ ତିନି ସପ୍ତାହକୁ,
ଖାଦ୍ୟ ଆଶେ ଚାହିଁଥାନ୍ତି ଭାରତକୁ ।

କଳେ ବଳେ କଉଶଳେ ଲୁଟିବାର,
ନାମ ତା'ର ବିନା ଶୁଳ୍କରେ ବେପାର ।

ରେଲ, ତାର, ଡାକ, ଜାହାଜ ଚଳାଇ,
ଦେଶୀଙ୍କୁ ମୂଲିଆ ପଣରେ ଲଗାଇ,

ମାଲିକ ସମାନ ବସି ଉଚ୍ଚାସନେ,
ରଖିଛନ୍ତି ଜଗାଇ କୋରଡ଼ା ଶାସନେ ।

ଆମକୁ ଜଗିବା ଲାଗି ଆମ ଧନେ
ଅଗଣା ଫଉଜ ସମ୍ଭାଳ ଯତନେ,

ବିପୁଳ ବାହିନୀ ଖର୍ଚ୍ଚ ଶିରେ ଚାପି
ଦରିଦ୍ର ପ୍ରଜାଙ୍କ ରକ୍ତ ନଏ ମାପି ।

ଚର୍ମସାର ହାଡ଼ କଙ୍କାଳର ମାଳା,
ଛପୋଳିୟ ପଥର ଗୋଇଠାର ଜ୍ୱାଳା ?

ଲୋକ ଶୋଷୀ ତଣ୍ଟି ଚିପି ଅକାତରେ
ଟିକସ୍ ବସାଇ ସ୍ୱଦେଶୀ ମାଲରେ,

ମୂଲ୍ୟ ମାଗ ତା'ର କଲେଟି ପହାର,
ଦେଲେ ବିଦେଶୀଙ୍କୁ ଖରଚ ବଜାର ।

ଏକା ଲୁଟିବାରେ ନ ହେଲା ସନ୍ତୋଷ,
ସର୍ବେ ମିଳି ଲୁଟିନେଲେ ଧନକୋଷ ।

ଜାପାନ, ୟୁରୋପ, ଆମେରିକା, ଚୀନ—
ମାଲ କିଣି ଆମେ ହେଲୁ ଧନହୀନ ।

ଜାହାଜରେ ବନ୍ଧିନେଲେ ଆରପାର,
ଶୂନ୍ୟ ହେଲା ଆମ ସୁନାର ଭଣ୍ଡାର ।

କାଗଜର ନୋଟ ସିନ୍ଦୁକ-ସମ୍ବଳ,
ଦୁଇଅଣା ଦିନକିଆ ଅର୍ଥବଳ ।

ବେପାର ବଣିଜ ନାହିଁ ସ୍ୱାଧୀନତା,
ବିଦେଶୀ ବଣିଆ ଗୃହ ଶିଳ୍ପହନ୍ତା ।

ତନ୍ତୀଙ୍କ ଆଙ୍ଗୁଠି କାଟି ମାଞ୍ଚେଷ୍ଟର--
ଲୁଗାରେ ଆମର ଘରଦେଲେ ଭରି ।

ହେବ ଆମ ଘର ଲୁଣି ପାରିବାରେ,
ଗନ୍ଧାଦର ଭବ କୋମଳ କପାରେ,

ଯେତେ ଧାନ, ମୁଗ ଗହମ, ଅପାର,
ତର୍ହିଁରେ ଗୃହସ୍ଥ ଜପାମାଳି ସାର ।

କରଦଆ ପୁଣି ଘୃତ ଚମତ୍କାର,
ଝଗଣା ସୃଷ୍ଟିବା ଲାଗି ରୋଜଗାର ।

କର' ତା' ଗୋଲାମି, 'ଭର' ତା' ଭଣ୍ଡାର,
ଆମ ଶକ୍ତେ ନାହିଁ ଆମ ଅଧିକାର ।

ଲିଭର୍ ପୁଲ୍ ଲୁଗା ପେଣ୍ଡ-କଉଡ଼ିରେ,
ନ କିଣିଲେ ଆଜ ଗତି ନାହିଁଟିରେ ।

ଆମରି ସାଗର, ଆମରି ଶିଳଜା,
ଆମ ଦ୍ରବ୍ୟ ଆମେ କରୁଁ ନିତି ଭିକ୍ଷା ।

ଲୁଣ କେ ମାରିଲେ ଜେଲ ଜୋରିମାନା,
ଆମେ ମୂଲ୍ୟ ଲାଗୁଁ ତାଙ୍କ କାରଖାନା ।

ପାଟ ମଲକ୍ଷେତେ, ଚାହା ବଗିଚାରେ
କୁଲିଙ୍କ ଜୀବନ ବିତେ ଅତ୍ୟାଚାରେ ।

ମେଲେରିଆ, ଶୋଥ, ଡେଙ୍ଗୁ, କଳାଜର,
ଗରିବ କୁଲିଙ୍କ ଚିର ସହଚର ।

ଭାରତ ଭାଗ୍ୟରେ ଖାଲି କୁଲିଗିରି,
ଅଳ୍ପ ବେତନରେ କରଣୀ ଚାକିରି ।

ଆଉ କି ଭାରତେ ଅଛି ସୁନା ଚିଢ଼ି,
ନେଲା ଭଣ୍ଡାରକୁ ନାନା ଫନ୍ଦ ବାନ୍ଧି ।

ଆମ କୁଳଲକ୍ଷ୍ମୀ ଆଭରଣ ହୀନା,
ସରିଲଣି ପୂର୍ବ ରୂପର ଗରିମା ।

ସୁନା ଅଙ୍ଗଙ୍କରେ ପିନ୍ଧେ କାଚଚୁଡ଼ି,
ମଣିମୁକ୍ତା ଛଡ଼ା ନ ଜାଣେ ଦଦ୍ରୁଡ଼ି ।

ପାଟ ପୀତାମ୍ବର ଝୀନ ବସନର,
ରଙ୍ଗ ଚକମକ କଥା ସପନର ।

ନାହିଁ ସେ ଚନ୍ଦନ, ସେ ନୂରଜାହାନ,
ଦେବତାଏ ଯା'ଙ୍କ ରୂପେ ହତଜ୍ଞାନ ।

ନ ସଜାଏ ଆଉ ଗୃହୁ ହର୍ମ୍ୟପୁଷ୍ପ,
ସୁନ୍ଦରୀଙ୍କ କଳା-ଶିଳ୍ପର ଗୃହଭୂଷ ।

ସ୍ୱଦେଶୀ ଦରବ-ପଦାର୍ଥରେ ଭରା,
ଆମ କୋଠାଘର ସିନ୍ଧୁକ ପେଟରା ।

ଚୀନାମାଟି, ଆଲମୋନିଆ ବାସନ,
କଂସା, ପିତଳକୁ କଲା ନିର୍ବାସନ ।

କପର ଭୁଲିବା ଦେଢ଼'ଶ ବର୍ଷର,
ଗୋଲାମୀ ସାରିଲା ତେଜ ମାନବର ।

ବଳବୀର୍ଯ୍ୟ ଶିଖ ସ୍ୱାସ୍ଥ୍ୟ ଧନହରା,
ଘେରେ ଖାଲି ଅକାଳରେ ମୃତ୍ୟୁ ଜରା ।

ପ୍ରତାପ, ଶିବାଜୀ, ଆଜି ସେ ସ୍ୱପନ,
ବୀର ବଂଶଧର ଦାସତ୍ୱେ ମଗନ ।

ସିଗ୍ରେଟ, ଚଷମା, ବିଲାତି ପୋଷାକ,
ନଭେଲ, ସିନେମା, ଟେରିକଟା ବାଙ୍କ,

ସୁରାପାନ ସାରଦେଲ ଯୁବାଗଣେ;
ବୁଢ଼ା ବୁଢ଼ୀଗଲେ ଅଫିମ ସେବନେ ।

ଏବେ ସେ ଉଠନ୍ତି ଗୋବରେମ ସ୍ବନ୍ଧି,
ଅସ୍ୱାଧୀନତାର ପରିଣାମ ଏହି ।

ଏ ଦେଶେ ଆମର ଭୂଇଁ ବୃଖଣ୍ଡିକ,
ନାହିଁ କରାୟତ୍ତ, ଜନ୍ମଭୂମି ଧିକ୍ ।

କହୁଁ କେଉଁ ମୁଖେ, ତାକୁଁ ଅଳଜୂକ,
ଏହାଠାରୁ ମୃତ୍ୟୁ କି ଦୁଃଖ ଅଧିକ ?

ସ୍ୱତ୍ୱ ଦତ୍ତ ଆମ ଜନ୍ମ ଅଧିକାର
ହରାଇ ଆରତେ କରୁଁ ହା' ହା'କାର ।

ନିଜ ଅନ୍ନ ପାଣି ନିଜେ କିଣି ଖାଉଁ;
ଆପଣାକୁ ପୁଣି ମଣିଷ ବୋଲାଉଁ ।

ଖାରୁ ମାର୍ଜାରର ପରି ପରସ୍ପରେ,
ଦ୍ୱନ୍ଦ୍ୱ ସାଧି ମରୁଁ ଆତ୍ମୀୟ ଦ୍ୱେଷରେ ।

ଭାଇ ଭାଇ ମଧ୍ୟେ ଭେଦ ଉପୁଜାଇ
ବିଦେଶୀ ବସଇ ରାଜଗାଦି ପାଇ ।

ସୁନାର ଭାରତ କଲ ଛାରଖାର,
ବିଦେଶୀ ବଣିକ ଧୂର୍ତ୍ତ ବ୍ୟଟୁକାର ।

କେହି ନ ଭୁଲ ତା' କୋମଳ କଥାରେ,
ନ ଯାଅ ବିଶ୍ୱାସ ଶଠ ତୋଷଣାରେ ।

ଦଗା ଦେଇଛି ଯେଉଁ ଶତ ଶତ ବାର,
ତା' ସଙ୍ଗେ ବିଶ୍ୱାସ ନାହିଁ ବ୍ୟବହାର ।

ମଣିଷ ବୋଲି ସେ ତୁମକୁ ନ ଗଣେ,
କୌଶଳେ ବିନାଶେ ମାରେ ପଣେ ପଣେ ।

ହାତରେ ନ ମାରି ଭାତେ ମାରିବାର,
କୂଟନୀତି ତା'ର ଶାନ୍ତିର ପ୍ରକାର ।

କାପୁରୁଷ ପଣେ ଯେ ଶାନ୍ତି ଅର୍ଜନ,
ତା'ଠାରୁ ବରଞ୍ଚ ମୃତ୍ୟୁ ପ୍ରୟୋଜନ ।

ବରଞ୍ଚ ମହାଭୋଗ କରି ସ୍ୱର୍ଗବାସ,
ଅର୍ଦ୍ଧମୃତ ଜୀବେ ନିତ ମୃତ୍ୟୁ ତ୍ରାସ ।

ଶୃଗାଳ ଜୀବନେ କି ଲୋଡ଼ା ଆମର,
ସିଂହପରି ପ୍ରାଣ ତେଜିବୁଁ ଏଥର ।

ଧର୍ମେ କର୍ମେ ସବୁ ଦେବୁ ଜଳାଞ୍ଜଳି,
ଦାସ ଧର୍ମ ମୁକ୍ତି ମନେ ନେବୁ ଦଳି ।

ଦେଶ ଆମ ଧର୍ମ କର୍ମ ଜପାମାଳି,
ଅନ୍ତରର ତନ୍ତ୍ର ଜୀବନ ସଙ୍ଗୀଳି ।

ସେନାପତି ତବ କଲେଣି ଆହ୍ୱାନ,
ଆସ ଅରପଣେ ହୁଅ ଆଗୁଆନ ।

ବାଜି ଉଠିଲାଣି ରଣତୂରୀ, ଭେରୀ,
ନ ଅନାଅ ଆଉ ପଛପଟେ ଫେରି ।

ଆଜି ରଣଯାନେ ଶୂର ପରାକ୍ରମୀ,
ତୁମ ଶକ୍ତି କେହି ନ ପାରିବ ଦମି ।

ମହାଯୋଗୀ କର୍ମବୃନ୍ଦ ଗାନ୍ଧୀଙ୍କର,
ଫଳିବ ତପସ୍ୟା, ମୁକ୍ତ ଭାରତର ।

ନୀଳାକାଶତଳେ ତୁମ ରକ୍ତାଙ୍କିତ,
ଉଡ଼ିବ ପତାକା ଜୟ ସୁନିଶ୍ଚିତ ।

ଅନ୍ୟାୟ ଶାସନ ତରବାର ମଣ୍ଡି,
ଅକାତରେ ଶିରେ ନ ପାତିବ ବନ୍ଧ ।

ଅଛି କି ଦୁଷ୍ଟନ ଅନ୍ୟାୟର ସୀମା,
କେ କଳିବ ତା'ର ଅନ୍ୟାୟ ମହିମା !

ମହାରଣେ ଢାଳିଥିଲୁଁ ଯେ ଶୋଣିତ
ତା'ର ପ୍ରତିଦାନ ହେଲେ ସେ ଜଟିଳ ।

ଦେଇଥିଲୁଁ ଗଣ୍ଡି ଦଉଡ଼ି ଫିଟାଇ,
'ରେଗୁଲେଟିଂ ଆକ୍ଟ' ଦେଲା ତା ସୁଝାଇ ।

କାହୁଁ ଯେ ଢପଟେ ବନ୍ଧୁ ବ୍ୟବହାର,
ଅର୍ଡିନାନ୍ସ ହେଉ ଜାରି ବାରମ୍ବାର ।

ସାମାନ୍ୟ ସନ୍ଦେହେ ସହସ୍ର ଗ୍ରେପ୍ତାର,
ଯୁବକ ଶକ୍ତିକୁ ପେଷେ କାରାଗାର ।

ମଣ୍ଟେଗ୍ୟୁ ଚେମସ୍‌ଫୋର୍ଡ଼ ଶାସନ ସଂସ୍କାର,
ପିଲଙ୍କୁ ଠାକୁଆ ଭଣ୍ଡିବା ପ୍ରକାର ।

ଦ୍ୱୈତ ଶାସନର ଲୀଳା ଚଳିଲେ,
ଦ୍ୱିମନା ମୂର୍ଖଙ୍କୁ ତାହେ ନଚାଇଲେ ।

ତା'ପରେ ପେଶିଲେ ଦଳେ କମିଶନ
ମଧ୍ୟର ଭକୁଆ ଦୂତ ସାଇମନ ।

ଶାନସନ୍ତ୍ରୀ ପଞ୍ଚ ଭାରତେ ବୁଲିଲେ,
ଆମ ସ୍ୱାମଧନେ ମଞ୍ଜିକ ମାରିଲେ ।

ତାଙ୍କ ଆଗମନେ ପ୍ରଥମ ଶୀକାର,
ଲାଲ୍ ଲଜ୍‌ପତେ ଲାଠିର ପ୍ରହାର ।

ଭୁଲୁଁ ନ ଭୁଲୁଁଣୁ ଲାହୋର, ମିରଟେ,
ଅଟକ ଯୁବକେ ଛଳନା କପଟେ ।

ଚନ୍ଦ୍ରପନ୍ତ ବୀନା ଧର ବିନାଦୋଷେ
ଭଗତର ଯାଗ କର୍ମୀଙ୍କେ ଶେଷେ ।

କଠିନ ଦ୍ୱୀପର ଅବା କାରାବାସ
ଦହି ଏ ଦେଶର ଶକ୍ତି କଲ ନାଶ ।

ଜାଲିଆନାବାଗ କରୁଣ କାହାଣୀ
ଡାୟାର, ଓଡ଼ାୟାର କମାଣ ନିଶାଣୀ ।

ମୋ ପିଲାଙ୍କ ଗୁଳିଫଟା ଦେହଛଟା,
ଶ୍ୱାସରୁଦ୍ଧ ମୃତ୍ୟୁ ଶୋଷ ହଟା ହଟା ।

ମଧ୍ୟ ପ୍ରଦେଶରେ ଦୁର୍ଭିକ୍ଷ ଖ୍ୟାପଣ,
ବଙ୍ଗ ଓଡ଼ିଶାର ବଢ଼ିର ଜଷଣ ।

ଲାହୋରର ଘୋର ଦୁର ଅତ୍ୟାଚାର,
'ରାଜଦ୍ରୋହ ଛଳେ ଯୁବକେ ଗ୍ରେପ୍ତାର ।

ବଜପୁ, ଯତୀନ୍ଦ୍ର, ଅନଶନ ବ୍ରତ—
ମୃତ୍ୟୁ କଥା ମନେ ନିୟତ ଜାଗ୍ରତ ।

ଦେଶବନ୍ଧୁ, ଗୋପବନ୍ଧୁ, ଲାଜପତ
ଯା' ଧର୍ମଶାସନେ ଅକାଳେ ନିହତ ।

ଗାନ୍ଧି, ଜହରଲାଲ, ରାଜେନ୍ଦ୍ର, ସୁଭାଷ,
ପଟେଲ, ସତ୍ୟପାଳ କଲେ କାରାବାସ ।

ଦେଶାନ୍ତରୀ ରାସବିହାରୀ, ମହେନ୍ଦ୍ର,
ହରଦୟାଲ, ସାବର କର, ଅରବିନ୍ଦ ।

ସ୍ମରୁଛ କେଶରୀ ଭାରତ ରତନ
ଟମ୍ପନର ତଳେ ତ୍ୟଜି ମହାଜନ ।

କଳା ବୋଲି ହେୟ, ଘୃଣ୍ୟ ଦନ୍ତଧାନେ
କଳା ମାଟ, ଗୋରୁ, ତସ୍କର ସମାନେ ।

କଳା ଦେହେ ଆମ ନାହିଁକି ରକତ,
ଏବେ ଜଗତରେ ନ ହେବ ତପତ?

ଦକ୍ଷିଣ ଆଫ୍ରିକା କଳାଙ୍କ ନିଗ୍ରହ
ଶୁଣିଲେ କାହାର ନ ବହିବ ଲୁହ !

ଜେନେରାଲ ସ୍ମଟ୍ ନିଷ୍ଠୁର, ନିର୍ଦ୍ଦୟ
ରାକ୍ଷସାବତାର, ହିଂସାର ବିଗ୍ରହ ।

କଳାଙ୍କୁ କଲା ସେ କେତେ ଅପମାନ,
କଳା ତା ନୟନେ କୁକୁର ସମାନ ।

କୁଳି ଜାତି ପୁଅ ଭାବି ମହାତ୍ମାଙ୍କୁ
କେତେ ଦୁଃଖ ଦେଲା, ଅଜଣା କାହାକୁ ?

ଡ୍ୟାମ୍ ନେଟିଭ୍ ବୋଲି ତା'ର ଭାଇଗଣ,
କରନ୍ତି କଳାଙ୍କୁ ସ୍ନେହ ସମ୍ଭାଷଣ ।

ସେ କଳା ପୁତଳି ପୂଜାର ଅଭାବରେ
ସନ୍ତୁଷ୍ଟନ୍ତି, ତାଙ୍କ ଆତ୍ମା ତାରିବାରେ ।

ଆମ ଅର୍ଥି ଧନ କରଣ ଖରଚ
ବସାନ୍ତି ପାଦ୍ରୀଏ ମିଶନ, ଚରଚ ।

ଏବେ ଜ୍ଞାନଧନ ହେଲେଣି ଅଜାଡ଼,
ଜ୍ଞାନମୁଖେ ହିନ୍ଦୁସ୍ଥାନେ ଚଲେ ମାଡ଼ ।

ଶତକର ପଞ୍ଚାନବେ ନିରକ୍ଷର,
ନ୍ୟାୟଶାସନ ଏ ଦେଢ଼ଶ' ବଷର ।

ତାଙ୍କ ବୋଲି, ତାଙ୍କ ଢଙ୍ଗ, ରୀତିମତି
ଶିକ୍ଷି ଦକ୍ଷିବି ବାହଣ୍ଟର ବତି ।

ଏଥି ମରମେ ତ ଧରମ ପ୍ରଗୃର,
ହିନ୍ଦୁ ଅନ୍ଧବୋଲି କରନ୍ତି ପ୍ରଗୃର ।

ମୂର୍ଖ ମୁସଲମାନ, ବୌଦ୍ଧ ନିସ୍ତୁର,
ଆମେ ଏକା ଖାଁଟି, ଜଗତପାବନ ।

ଜଣା ତ ଯାଇଛି ଖାଁଟି ପଣ ଗୁଣ,
ହର ନେଲେ ଅସ୍ତ୍ର, ଅନ୍ନ, ପାଣି, ଲୁଣ ।

ମନୁଷ୍ୟ ଜନ୍ମରୁ ଡାଳିବେ ଏବାର,
ବୁହାଇ ଭାରତ ତପ୍ତ ରକ୍ତଧାର ।

ଧର୍ମାଦର୍ଶଧାରୀ ଭଣ୍ଡ ପ୍ରବଞ୍ଚକ
ଅଣ୍ଟିରେ ଥାଇଣ ଚଣ୍ଟିକଣ୍ଠା ଠକ ।

ମହାରାଣୀ କରିଥିଲେ ଯା' ଘୋଷଣା
ହୋଇ ରହିଲା ସେ ଅକ୍ଷର ରଚନା ।

ନ୍ୟାୟେ ଧର୍ମଜାତି ବର୍ଣ୍ଣ ନିର୍ବିଶେଷେ
ପାଳିବେ ପ୍ରଜାଙ୍କୁ, କି ହୋଇଲା ଶେଷେ ?

ଆଖି ଦେଖୁଥାଇ ଅନ୍ୟାୟ ଗୋରାର
କଳା ଗୋରା କାର୍ଯ୍ୟେ ଭେଦ ବ୍ୟବହାର ।

ଉଚ୍ଚ ଅଟ୍ଟାଳିକା, ବଙ୍ଗଳା, ମୋଟର,
ବେହେରା, ଚପ୍ରାଶି, ଅର୍ଦ୍ଦଳି ନୌକର,

ପଦେ ପଦେ ଆଜ୍ଞାକାରୀ ଅନୁଚର,
ମାଗଣାରେ ମିଳେ ସେବକ ଡାକ୍ତର ।

ଗୋଡ଼େ ଗୋଡ଼େ ତାଙ୍କ ବଜାଇ ସଲାମ,
ଅଳପ ଖଟଣି, ବ୍ୟସନ, ଆରାମ ।

ଶିକାର ଖେଳିବା ଲାଗି ବନ୍ଦୋବସ୍ତ,
ସବୁ ସୁବିଧାରେ କରନ୍ତି ସେ ଗସ୍ତ ।

କାର୍ଯ୍ୟକାରୀଠାରୁ ଡ୍ରାଇଭର ଯାଏ,
ସାରା ଖରଚଟା ସରକାର ଯୋଗାଏ ।

ଗୋରା ତାଙ୍କ ଚମ ବିଲାତରେ ପାଶ୍,
ଫର୍ମାସୀ ଯୋଗାଇ ମରେ କଳା ଦାସ ।

ତହିଁ ଉଚ୍ଚ ଉଚ୍ଚ, ବେତନ ଅଗଣା,
ଖଞ୍ଜାଏ ଦରିଦ୍ର ପ୍ରଜାଙ୍କ ଖଜଣା ।

ତହିଁ ପୁଣି କେତେ ଗୋରା ବୁଟ୍‌ଚଟା,
ଆମର ଖାଇଣ ଆମ ତଣ୍ଟିକଟା ।

ଗୋଦର ଗୋଡ଼ର ଖାସଣ ଫୋଟକା,
ମିଛ ଚଟ୍‌ଚଳା ଧୋବ ପାଣିପାକ।

'ଓଟୋ' ମାରିବାକୁ ପ୍ରତ୍ୟେକ କଥାରେ,
ଆପଣା ଜାତିର ଦାଉ ସାଧିବାରେ ।

ହିନ୍ଦୀ ଦଳ କେତେ ଗୋରା ଅନୁଗତ,
ତାଙ୍କ ପାପେ ବୁଡ଼ି ରହିଛି ଜଗତ ।

ଯାବଚ୍ଚନ୍ଦ୍ର ଦିବାକର ବସୁଜବେ,
ବିଶ୍ୱାସ ଘାତକେ ଦୁର୍ନାମ ଅର୍ଜିବେ ।

ପରାଧୀନ ତାଙ୍କ କୁଚକ୍ର ଫଳରେ
ଭାରତ ଶୃଙ୍ଖଳ ପିନ୍ଧିଛି ପଦ୍ମରେ ।

ଏପରି ଶୃଗାଳେ ଶତ ନମସ୍କାର,
ଯଦୁକୁଳ ଧ୍ୱଂସୀ ଶାମ୍ବ ଅବତାର ।

ଏହାଙ୍କ ପଛକୁ ପୁଣି ବଳୀୟାର,
ଅଳସ ବିଳାସୀ ରାଜା ଜମିଦାର ।

ମଦ, ବାରାଙ୍ଗନା, ସିନେମା, ମୋଟର,
ନାଚ, ଲଟଭୋଜ, ବିଲାତ ଭ୍ରମର ।

ଦେହେ ବାସ କୋଟି ଉତ୍କଟ ବ୍ୟାଧିର,
ତେଜବୀର୍ଯ୍ୟ ଶୂନ୍ୟ ଦାସ ଔଷଧିର ।

ସୂର୍ଯ୍ୟଚନ୍ଦ୍ର ବଂଶୀ କ୍ଷତ୍ରିୟ ଏମାନେ,
ଦେବତାଏ ଡରୁଥିଲେ ତାଙ୍କନାମେ ।

ହରିଶ୍ଚନ୍ଦ୍ର, ରାମଚନ୍ଦ୍ର, ଯୁଧିଷ୍ଠିର—
ରୁଧିରେ ଭରା କି ଯାଙ୍କର ଶରୀର !

ଶିବାଜୀ-ପ୍ରତାପ ପୁରୁଷ ଉତ୍ତମ,
ସିଂହ-ଗଜପତି-ଗୋଷ୍ଠିରେ ଜନମ ।

ହୀନ ସୃଷ୍ଟି ପରି ବିଳାସ-ପଙ୍କରେ
ଲୋଟି କ୍ଷତ୍ରୀନାମ ଲେପି କଳଙ୍କରେ ।

ପ୍ରଜାରକ୍ତ ଶୋଷି ବୋଲାନ୍ତି ପାଳକ,
ବେଠି ଖଟି ପ୍ରଜା ପୀଡ଼ିତ କାଳକ ।

ଦାଢ଼ହୀନ ଖଣ୍ଡା ଖଣ୍ଡିକ ଭୂଷଣ,
ଏହିମାନେ ଗୃହଶତ୍ରୁ ବିଭୀଷଣ ।

ନଟକୂଟପଟୁ ବ୍ରିଟନ୍ କୁମାରେ,
କାଠ ପିତୁଳାଙ୍କୁ ଖେଳାନ୍ତି ମଜାରେ ।

ତାଙ୍କୁ ଦେଲେ ସବୁ ଶାସନ ତାମସା,
ଉପାଧି ବା ପଦବୃଦ୍ଧିର ଲାଳସା ।

ସ୍କୁଲ୍ କଲେଜରୁ କାଉନ୍‌ସିଲ୍ ଯାଏ
ଇଂରାଜ ଏହାଙ୍କୁ ମଞ୍ଚେ ନଚାଏ ।

ରାୟ ବାହାଦୁର, ଖାଁ ବାହାଦୁର-
ପଦଟି ଆଶାରେ ହଜାରେ ହଜୁର ।

ଜଗତ ଅସ୍ତିତ୍ୱ ଥିବା ପର୍ଯ୍ୟନ୍ତ,
ଚାହାନ୍ତି ଏମାନେ ଗୋରାଙ୍କ ରାଜତ୍ୱ ।

ଚୈତ୍ର ସାଇ ଗାଲକଟା ସର୍ଦ୍ଦାର,
ଶତ୍ରୁ କର ଯାଙ୍କୁ ଦୂରରୁ ଜୁହାର ।

ହାୟ ଏତେ କାଳ ଏ ଘୋର ଦୁରନ୍ତ,
ଭ୍ରାତୃହତ୍ୟା ଥିବ ଭାରତେ ଜୀବନ୍ତ !

ତେଜ ପୁରୁଷଙ୍କ ମହତ୍ତ୍ୱ ଗୌରବେ,
ବର୍ଜିବେ କେତେଦିନ ଏ କୌରବେ ?

ଲଭି ସରକାର ତଳେ ଅନୁଗ୍ରହ
ସାରା ଜାତିଟାକୁ କଲେ ଯେ ବିଗ୍ରହ ।।

ଏହି କୁଳାଙ୍ଗାରେ କରି ଜନ୍ମଦାନ
ହିନ୍ଦୁସ୍ଥାନ ରହିଛନ୍ତି ହୀନମାନ ।।

ଦେଶ ଲୁଣ୍ଠି ଖାଇ ଗାଇ ପରଗୁଣ
ସାରିଛନ୍ତି ଜନ୍ମଭୂମି ସନ୍ମାନ ।।

ଏହି ମାନଙ୍କର ଭୋଗି ପାପଫଳ
ଭାରମାତା ବେଦଭୂମି ହୀନବଳ ।

ନବାର୍ଯ୍ୟ ନରହନ୍ତ ପଦାନତ ଯାର
ଶାନ୍ତ ମନ୍ତ୍ରଧାରୀ ତର ପରାଶ୍ରିତ ।

ହିନ୍ଦେ ହେବେ ଥିଲେ ରାଜା ମୁସଲମାନ
ଏଡ଼େ ଖାରୁ ନଥିଲା ତ ହିନ୍ଦୁସ୍ଥାନ !

କରୁଥିଲେ ରଣ ସମାନେ ସମାନ,
ମୋଗଲର ସର ବୈଶ୍ୱ ରାଜସ୍ଥାନ ।

ଦର୍ପୀ ଔରଂଜେବ ଦମ୍ଭୀ ଶିବାଜୀର
ସମପ୍ରତି ବନ୍ଦୀ ବେଳ ମହାବୀର ।

ବେଙ୍କର ସ ଖାତ ଖୋଳି ଚରକାରେ
ବୀର ପନ୍ଥ ମରବାରେ ମାରବାରେ ।

ଆଜ କ ଦେଖୁଛ ହିନ୍ଦୁସ୍ଥାନ ଭାଇ,
ହୀନ ଘରଛାୟ ଶାନ୍ତି ମନ୍ତ୍ର ଗାଇ ।

ଭକ୍ଷ-ମୃଲ୍ଲା-ଗୋଲାମର ଦେଶ
ନାମେ ଚଉଦିଗେ ଲଭେ ଘୃଣା ଦ୍ୱେଷ ।

ଏ ଶାନ୍ତି ଶାସନେ ଯେ ଅସ୍ତ୍ର ଆଇନ
କଲା ପୁରୁଷଙ୍କୁ ଅବଳାଠୁଁ ହୀନ ।

ଦୂରେ ଥାଉ ହାତ ହତିଆର କଥା,
କଟାରି ଖଣ୍ଡକୁ ନାହିଁଟି ବ୍ୟବସ୍ଥା ।

କପର ବାରଭ ଜାଗିବ ଚିତ୍ତରେ,
ତୁଚ୍ଛ ଶସ୍ତ୍ରେ ଯଦ ନଥିବ ପାଖରେ ।

କୃପାଣ ଧାରଣେ ଶିଖ୍ ଯାଏ ଜେଲ,
ଦେଖ ଏ ଶାନ୍ତି ସୁନା କବା ଭେଲ ।

ପୁରୁଷଭୁ ହର ଯେ ଶାନ୍ତ ସାଧନ,
ସେ ଶାନ୍ତ ଆସରେ ନାହିଁ ପ୍ରୟୋଜନ ।

ଶତାଧିକ ଏହ୍ଵ ଶାନ୍ତନାମଧାରୀ
ବେପାର-ଚତୁର ଝୁଲ ଅତ୍ୟାଚାରୀ ।

ଗୁପ୍ତାଘାତ ପଟୁ କୂଟ କପଟିଆ
ଉପରେ ଯା' ଗୋର ରଙ୍ଗ ପଟୁଦିଆ ।

ଜୁଆରେର ଶାସନକୁ, ନମସ୍କାର,
କଲ ଭାରତର ଶକତ ସଂହାର ।

ମୁଣ୍ଡ ଟେକିବାର ନାହିଁ ଆଜ ବଳ,
ହାଡ଼ମାଂସ ପେଷା ବଡ଼ଙ୍ଗ ଏ କଳ ।

ଏ କଳ କବଳେ କେତେ ହେଲେ ନାଶ,
କେ ଦେବ ତାଙ୍କର ହ୍ରସାବ ନକାଶ ?

ସଢ଼ୁଛନ୍ତ କାରାଗାରେ ଭୁମ୍ଭ ଭାଇ
ପ୍ରାଣ ପଣ କର ଜନ୍ମଭୂମି ପାଇଁ ।

କେହ୍ଵି ରୋଗ ଶୋଯେ, କହ୍ରେଜ କେ ରୋକେ,
ତନୁ ତେଜି କେତେ ଗଲେ ସ୍ଵର୍ଗଲୋକେ ।

ଦନ୍ତ୍ୱ ସହ ଗଲ ସଜୀବ କାବୁଲ
ମୋଟା ମୁଜଫର୍, ଭଗତ୍, ନଜରୁଲ୍ ।

ମାତୃଭୂମି ପ୍ରେମ ତାଙ୍କ ଅପରାଧ,
ସ୍ୱର୍ଗ ଗଙ୍ଗାପୁରୀ ତା ଦଣ୍ଡରେ ବାଦ ।

ଜାଣ୍ଡପୁତା ପ୍ରତି ଈଶ୍ୱର ମମତା,
ହେଲ ଭାରତୀୟ ଯୁବ ପ୍ରାଣଦଣ୍ଡା ।

ଏତେ ହୀନ ଆଜ ଆମର କପାଳ,
ମାତୃଭୂମି-ପ୍ରୀତି ଆମ ପ୍ରତି କାଳ ।

ଦେଶ ପ୍ରେମ ଲାଗି ନର ପାଏ ପୂଜା,
ଆମର ଶାସନ ଓଲଟା ଅବୁଝା ।

କଳାପାଣି, ଫାଶିକାଠ, କାରାଗାର,
ଦେଶପ୍ରେମୀଙ୍କର ଏଠି ପୁରସ୍କାର ।

ସେହି ପୁରସ୍କାର ତିଳକ, ଗୋଖେଲ,
ପୂର୍ବେ ଲଭିଥିଲେ, ତୀର୍ଥ ତେଣୁ ଜେଲ ।

ଧର୍ମ ଅର୍ଜିବାକୁ ତୀର୍ଥ ବ୍ରତ ସର,
ଲକ୍ଷ ଲକ୍ଷ ଯୁବା ଜେଲ ଦାଅ ଭର ।

ଭାରତ ଗୋଟାକ ବଡ଼ କାରାଗାର,
କୋଣେ କୋଣେ ଉପଦ୍ରବ ଅତ୍ୟାଚାର ।

ଏଣିକି କି ଭୟ ଜେଲ୍ ନିର୍ବାସନେ,
ଏଣିକି କି ଭୟ ମୃତ୍ୟୁ ଅନଶନେ ?

ସବୁ ସରିବ, ଏ ଭାରତର ହାଡ଼
ନ ଭଙ୍ଗେ ସହଜେ, ଏ ଦୃଢ଼ ପାହାଡ଼ ।

ହିମାଳୟ ପରି ଅଚଳ ଅଟଳ,
କୋଟି କୋରଡ଼ାରେ ନହେବ ଦୁର୍ବଳ ।

ମହାମେରୁ ପରି ହୋଇଥିବ ଛିଡ଼ା,
ଦେଉନ୍ତୁ ବଇରୀ ଶତ ଦୁଃଖ ପୀଡ଼ା ।

ଶତ ଶତ ଯୁଗେ ସହସ୍ର ତାଡ଼ନେ,
ମୂଳ କି ଉପାଡ଼ି ପାରିଲେ କେ ଜଣେ ?

ମହାବୋଧି ବଟ ଅଚ୍ଛେଦ୍ୟ, ଅଜର,
ସର୍ବଂସହା ଭୂମି ଅକ୍ଷୟ ଅମର ।

ସେହି ଭୂମି ତୋଳେ ଜନମ ତୁମର,
ରକ୍ଷାଲାଗି ବେଗେ ହୁଅ ତତ୍ପର ।

ଉଠ ରାଜପୁତ, ପଞ୍ଜାବୀ ଓଡ଼ିଆ,
ଶତ ରଣକ୍ଷେତ୍ରେ ହୋଇଥିଲ ଠିଆ ।

ଉଠ ମରହଟ୍ଟା, ଗୁର୍ଖା ବଳବାନ,
ମାନ୍ଦ୍ରାଜୀ, ବଙ୍ଗାଳୀ, ସିଖ୍, ମୁସଲମାନ ।

ଗୁଜରାଟୀ ଯା’ ବର ତୋଳ ଜୟକେତୁ
ବାନ୍ଧିଲ ଭାରତବକ୍ଷେ ଦମ୍ଭ ସେତୁ ।

ଯାବର ମନ୍ତର ନର୍ତ୍ତକ ସୈନିକ,
ଉଠ ଭାରତର ଯୁବକ ନର୍ତ୍ତକ ।

ଆରମ୍ଭିବେ ମହାଶାନ୍ତିର ସମର,
ଆଗେ ଆଗେ ଚଳଛନ୍ତୁ ଯୋଗୀବର ।

ଗଳିତ ଦଶନ, ପଳିତ ଶରୀର,
ଜ୍ୟୋତି ଝଳେ ଅଙ୍ଗେ ସହସ୍ର ମିହିର ।

ବ୍ରହ୍ମା ବିଷ୍ଣୁ ମହେଶ୍ୱର-ତେଜଧାରୀ,
ଖଦଡ଼ ଶୋଭିତ ପୂତ ବ୍ରହ୍ମଚାରୀ ।

ଦକ୍ଷିଣ ଶ୍ରୀକରେ କରୁଣା କଲ୍ୟାଣ,
ବାମେ ଧାନସାଣ ଅରଟ ମହାନ ।

ନେତ୍ରେ ସୁରପ୍ରଭା, ଦ୍ୟୁତି ଭଗବତ୍ତା,
ପଦଭରେ କମ୍ପିଉଠେ ବସୁମତୀ ।

ନରମୂର୍ତ୍ତିରେ ନିଜେ ନାରାୟଣ
ଉଭା, କରିବେ ସେ ଭୂ-ଭାର ହରଣ ।

ତାଙ୍କ ଆହ୍ୱାନରେ କେ ରହିବ ତୁନି,
ମୋହନ ଡାକେ କେ ରହିବ ମଉନି ?

ଥାଉ ଏ ଶରୀରେ ସହସ୍ର ପରାଣ,
ଅରପଣ ଲାଗି ହେବେ ଆଗୁଆନ ।

ପଢ ଘୁଙ୍ଗା ଆଜ ନାହିଁଟି ଏକ୍ଷଣି,
ବନ୍ଧୁ, ଅବା ନଅ ମରଣ ବରଣି ।

ଗାନ୍ଧୀ ମନ୍ତ୍ର ଜପି ପ୍ରାଣ ଦଅ ବଳ,
ଦେଶ ମାତା ପଦେ ରକ୍ତ ପୁଷ୍ପାଞ୍ଜଳ ।

ଆସ ଏକସଙ୍ଗେ ହିନ୍ଦୁ, ମୁସଲମାନ,
ଶିଖ, ପାର୍ଶୀ, ଜୈନ, ଇହୁଦୀ, ଖ୍ରୀଷ୍ଟାନ ।

ଘେନ ମୋହନର ଅରଟର ଚକ୍ର,
ଛେଦ ସେ ଅରଟେ ବିଦେଶୀୟ ନକ୍ର ।

ଭେଦ ସେ ଅରଟେ କୂଟ ଜାଲ ତା'ର
ତୁମ ଆତ୍ମବଳ ଦେଖୁ ଏ ସଂସାର ।

ତୁମ ଧୈର୍ଯ୍ୟ ତୁମ ଦୁଃଖ କଷଟିରେ
ପରଖି ପକାଅ ଏହି ଥର ବୀରେ ।

ହେଉ ତବ ହୃଦ୍ୟା ବଜ୍ରରୁ କଠିନ,
ଅଚଳ ଅଟଳ କୃଷ୍ଣାର୍ଜୁନ, ଭୀମ ।

ଖଡ୍ଗବ୍ରତେ ବ୍ରତୀ, ଧର୍ମେ ଯୁଧିଷ୍ଠିର,
ହିଫଳିବ ତେବେ ମନ୍ତ୍ର ଶତ୍ରୁନର ।

ଉଠ ଅପ୍ରତିମ ତେଜେ ଅରିନ୍ଦମ,
ଖର ଖରଗାପ୍ତୁ କେଶରୀ ବିକ୍ରମ ।

ପଞ୍ଚଦୁଆ ଆଜ ନ ଦଅ ଏଥର,
ନିଅ ପରଶୋଧ ମଣିଷ ପଣର ।

କମା ଜଗତଟା ଅବଜ୍ଞା ଦୃଷ୍ଟିରେ
ବନ୍ଧୁ ପେ ଗୃହ୍ଣିବେ ଜେଦିଶ କୋଟିରେ ?

ତା'ଠାରୁ ବରଞ୍ଚ ଝାସ ଏ ଅଗ୍ନିରେ,
ଯାଉ ଦେହ, ନାମ ରହୁଟି ମହୀରେ ।

ସ୍ୱରାଜ୍ୟ ଆମର ଜନ୍ମ ଅଧିକାର,
ନ ମିଳେ ଯଦି ତା' ଧ୍ୱଂସ ଆପଣାର ।

ସାଧି ନଜହାତେ ମର ଏକାଥରେ,
ମିଶୁ ହିନ୍ଦୁସ୍ଥାନ ସିନ୍ଧୁ ଗରଭରେ ।

ତୁଙ୍ଗ ହିମଶୃଙ୍ଗ ପାରବାର ଅଙ୍ଗେ
ଖସି ମିଶିଯାଉ ଅଗଣ୍ୟ ତରଙ୍ଗେ ।

ହେ ପୁରୁଷେ ଯଦି ନ ଉଠ ଏଥର,
ଆମେ ରଣବେଶେ ହେବୁଁ ଅଗ୍ରସର ।

ତୁମେ ଯଦି ଭୟେ ଦିଅ ପଞ୍ଚଦୁଆ,
ଆମେ ତେଜି ଦିବୁଁ ଆମ ଲାଜ ଲୁହ ।

ଆମେ ନାରୀଗଣ କୋଣରୁ ବାହାରି
ଧରିବୁଁ ଅସହଯୋଗ ତରବାରି ।

ଶାନ୍ତ ସତ୍ୟାଗ୍ରହ ମହାରଣସ୍ଥଳେ
ଦୋହଯାହା କରିପିବୁଁ ଦଳେ ଦଳେ ।

ଆମେ ଭାରତର ଶକତ ସନ୍ତତ,
ତଳେ ଧ୍ୱଜ ଚଳେ ନାହୁଁ ବୈରି ପ୍ରତ ।

ଦେଉ ସେ ଆମ୍ଭଙ୍କୁ ଧର କାରାଦଣ୍ଡ,
କରୁ ସୁକୋମଳ ଦେହ ଖଣ୍ଡ ଖଣ୍ଡ ।

ଝୁଲାଇ ଥାଉ ଫାଶି ଖୁଣ୍ଟେ ଆମ ମୁଣ୍ଡ,
ଆମେ ସେ ନ ଡରୁଁ ଚତା ଅଗ୍ନିକୁଣ୍ଡ ।

ଉଠିବୁଁ ଗୋ ଚଣ୍ଡୀ ଚାମୁଣ୍ଡା ପ୍ରଚଣ୍ଡ,
ବୈରିଶକ୍ତି ନଷ୍ଟେ ହେବ ଲଣ୍ଡ ଭଣ୍ଡ ।

ହେ ପୁରୁଷେ ଉଠ ପାର୍ଥ, ପୃଥ୍ୱୀରାଜ,
ଭୀମ, ରାମ, କୃଷ୍ଣ ସାଜ ସାଜ ସାଜ ।

ବାନ୍ଧିଦେବୁଁ ଶିରେ ରକ୍ତ ଶିରତାଜ,
ପିନ୍ଧାଇବୁ ପୂତ ହାତେ ରଣସାଜ ।

ସଜାଇ ଦେଖାଇ ତେଜେ ଅଗ୍ନିଶିଖା,
ପତିବ୍ରତା ପଣ ଆମ ଜୟଟୀକା ।

ଆମ ଆଗେ ଜଏ ଠିଆ ହେବ ଭବେ,
ତୁମ ସଙ୍ଗେ ଆମେ ମିଶିବା ଆହବେ ।

ଯାଉ ପଛେ ପ୍ରାଣ ଥାଉ ଦେଶମାନ,
ରଖି ଜାଣୁଁ ଆମେ ସ୍ୱଧର୍ମ ସମ୍ମାନ ।

ମୋହନ ପତାକା ତଳେ ମିଶିବାଇ-
ସଙ୍ଗେ ଗାନ୍ଧିନାମ ମହାମନ୍ତ୍ର ଧ୍ୟାୟୀ ।

ଅସହଯୋଗର ଏ ଶାନ୍ତ ସମରେ
ନେବୁଁ ଭାଗ ହର୍ଷେ ବାସନା ପ୍ରାଣରେ ।

ପତିପଦେ ଧ୍ୟାନ, ଊର୍ଦ୍ଧ୍ୱେ ଭଗବାନ,
ସମ୍ମୁଖେ ମହାତ୍ମା ସ୍ୱଦେଶ ସମ୍ମାନ ।

ଭାରତର ନାରୀ ନୋହୁଁ ଆମେ ହୀନା,
ଷୋଳ କୋଟି ଆମେ ନୋହୁଁ ଅକ୍ଷୀଣା ।

ଆମ ମାଆ ଥିଲେ ଲକ୍ଷ୍ମୀ, ଦୁର୍ଗାବତୀ,
ଆମେ କର୍ମ ଦେବୀ ପଦ୍ମିନୀ ସନ୍ତତି ।

ସାଧନ ଆମର ଭାରତ ଉଦ୍ଧାର,
ମହାଶକ୍ତି ଅସ୍ତ୍ରେ ମ୍ଲେଚ୍ଛର ସଂହାର ।

ହରିଲା ଯେ ଆମ ବସ୍ତ୍ର ଆଭରଣ,
ଆମ ମଣିମୁକ୍ତା କଲା ଯେ ହରଣ,

ଆମ ସନ୍ତାନଙ୍କୁ ଅର୍ଦ୍ଧ ଅନଶନେ,
ପେଷି ନାନା ଯନ୍ତ୍ରେ ମାରିଲା ଜୀବନେ,

ଯାହା ଯୋଗେ ଆଜି ହେଲୁଁ କାଙ୍ଗାଳିନୀ,
ବସ୍ତ୍ର ବଜ୍ରଦାଣ୍ଡେ ବୁଲୁଁ ଭିକାରୁଣୀ,

ତା ଉଚିତ ଦଣ୍ଡ ବିଧାନ ପ୍ରୟାସେ,
ଯୋଗିଦେବୁଁ ଶକ୍ତି ଅରଟେ ଉଲ୍ଲାସେ ।

ଶକ୍ତିମୟୀ ହସ୍ତେ ଧରିଣ ଅରଟ,
ଗର୍ଜିବୁଁ ବଇରୀ ଚମକୁଟ ନଟ ।

ନିଷ୍ଠୁର ନିଗଡ଼ ଫେଡ଼ିବା କାରଣ,
ଆମ ହସ୍ତେ ସେହି ହେବ ସୁଦର୍ଶନ ।

ପଶୁବଳ ନୁହେଁ, ଆତ୍ମିକ ଶକତି,
ଆମେ ଯେ ତହିଁର ସଜୀବ ମୂରତି ।

ଧୈର୍ଯ୍ୟ, ଶାନ୍ତି, ଭକ୍ତି, କ୍ଷମା, ସତ୍ୟ, ସ୍ନେହ,
ସ୍ୱର୍ଗୀୟ ଭୂଷଣେ ଭୂଷ ଆମ ଦେହ ।

ଅରଟ, ଅରଟ ଆମ ଜପାମାଳ,
ଅରଟରେ ସୂତା ଜୀବନ ସମ୍ବାଳ ।

ସ୍ୱଦେଶୀ ବର୍ଜନ ଦୃଢ ବ୍ରତ ପାଳ,
ଦର୍ଜୀଙ୍କ ଶାସନ ଯନ୍ତ୍ର ଦେବୁଁ ଟାଳ ।

ଗାଅ ହେ ଭଗିନୀ ଅରଟର ଗୀତ,
ଅରଟରେ ଆମ ସାଧନା ନିହିତ ।

, ସର୍ବବଳ ଚର୍ଣ୍ଣି କରିବା ନିଶ୍ଚିତ,
ଆଣିବା ଫେରାଇ ସୁବର୍ଣ୍ଣ ଅତୀତ ।

ଅଟଳ ଆମର ଜୀବନ ସମ୍ବଳ,
ଅଟଳ ଯେ ଏକା ଭାରତର ବଳ ।

କୋଟି ମେସିନ୍‌ଗନ୍, ଲକ୍ଷ ରଣତରୀ,
ଅସ୍ପୃଶ୍ୟ କମାଣ ନୁହେଁ ତାକୁ ସରି ।

ଅଟଳକୁ କହ କି ଅସ୍ତ୍ରେ ନାଶିବ,
ଅଟଳ ପ୍ରଭାବେ ନିଜେ ନାଶ ଯିବ ।

ଅଟଳ ଭାରତ ହସ୍ତେ ସୁଦର୍ଶନ,
ଗାନ୍ଧିବେଶେ ଅବତରିଲେ ନାରାୟଣ ।

ଖଡ୍ଗ ବସନା ଅଟଳ ସୁନ୍ଦରୀ,
ଜଗଦ୍ଧାତ୍ରୀ, ଜୟ ପାର୍ବତୀ ଶଙ୍କରୀ ।

ହେ ଭବାନୀ, ତୁମ ବଳରେ ଭାରତ,
ହୋଇବ ମୁକତ, ହୋଇବ ମୁକତ ।

ଜୟ ରଣଚଣ୍ଡୀ ଅଟଳ ଧାରଣୀ,
ହେ ମହାଭୈରବୀ ଭାରତ ତାରିଣୀ ।

ଅରଣ୍ୟର ପୂଜା ଭ୍ରମର ସାଧନା,
ଅରଣ୍ୟେ ଭାରତ ମୁକ୍ତି ଉଦ୍‌ଯାପନା ।

ଆଜ ହୋଲିଖେଳେ ଆସିଛି ଆହ୍ୱାନ
ଫଗୁଖେଳେ ଆଜ ନ ବଳେ ପରାଣ ।

ଢାଳ ସ୍ୱ-ରୁଧିର ଅବିର, ବଦଳେ
ନୂଆ ଫଗୁଖେଳେ ମାତିବା ସକଳେ ।

ଲାଲେ ଲାଲ ହେବ ରଙ୍ଗ ଭାରତର,
ତହିଁ ଲୁଚିଯିବ ଲାଲ ଶତ୍ରୁନର ।

ପୂର୍ବେ କହିଥିଲେ ରାଜା ରଣଜିତ୍,
ହେବ ସବୁ ଲାଲ ବ୍ରିଟିଶ ଜଗତ ।

ହିନ୍ଦୁସ୍ଥାନ ଭୂମି ସେହି ଶହୀଦମାନ,
ଘୁଞ୍ଚାଅ ଶୋଣିତେ ଦେଶ ଅପମାନ ।

ବୀର ଦେଶଭକ୍ତ ତବ ରକ୍ତ ବିନା,
କେଭେଁ ନ ଲିଭିବ ଏ ଗାଢ଼ ରକ୍ତିମା ।

'ଦିଅ ରକ୍ତ' ବୋଲି ଶୁଭଇ ଶଙ୍କାର,
କମ୍ପାଇ ଦିଅନ୍ତ ଗିରି ପାରବାର ।

'ଜୟ ଜଗନ୍ନାଥ' ଉଚ୍ଚେ ଦେଇ ଡାକ,
ଉଠ ଭାରତର ବୀରପୁତ୍ରଯାକ ।

ପୂର୍ବେ 'ଆହେରିୟା' ଉତ୍ସବେ ଯେସନେ,
ରାଜପୁତେ ହୋଲି ପରବ ପାଳନେ ।

କରୁଥିଲେ ଦେଶ ସୌଭାଗ୍ୟ ନିର୍ଣ୍ଣୟ,
ତେସନ ଉଠହେ ତେଜ ଦକା ଭୟ ।

ପ୍ରଭୁ ଜଗନ୍ନାଥ ସହାୟ ତୁମର,
"ମା ଭୈଃ" ନାଦେ ହୁଅ ଅଗ୍ରସର ।

ଘଣ୍ଟ ଘୋଡ଼ାଇଣ ରଖିବେ ଶ୍ରୀହରି,
ଜୟ ସୁନିଶ୍ଚିତ ନାଶଯିବ ଅରି ।

'ଜୟ ଜଗନ୍ନାଥ' ଉଚ୍ଚେ ଦେଇଡାକ,
ଆସ ଭାରତର ବୀରପୁତ୍ରଯାକ ।

ଆଜି ରଣକ୍ଷେତ୍ରେ ମହାସମ୍ମିଳନ
କର ବୀର ମୃତ୍ୟୁ ସ୍ୱାଧୀନତା ଧନ,

ସ୍ୱାଧୀନ ଭାରତ ନୀଳାମ୍ବର ତଳେ,
ସ୍ୱାଧୀନ ଜୀବନଯାତ୍ରା କୁତୂହଳେ ।

ସ୍ୱରାଜ୍ୟ ଆମ୍ଭର ଜନ୍ମ ଅଧିକାର,
କାମ୍ୟ ସ୍ୱାଧୀନତା ଧ୍ୟେୟ ଶ୍ରେଷ୍ଠସାର ।

ସେହି ଅଧିକାର ଲଭହେତୁ ଭାଇ,
ଚଲ ଚଲ ବୀରେ ଆଗକୁ ଅନାଇ ।

ସାବରମତୀର ସ୍ୱରାଜ୍ୟ ସୈନିକ
ଉଠ ଭାରତର ଯୁବକ ନର୍ତ୍ତକ ।

ଉଠ ଭାରତର ବୀର ଯୁବଯାକ,
ସେନାପତି ଆଜ ଦେଇଛନ୍ତି ଡାକ ।



# ସେବକାର ପ୍ରାର୍ଥନା

ତୁମ୍ଭ ପୂଜା ପାଇଁ ସଖା ହେ
ସଜାଡ଼ିଛି ବେଦିକା,
ଶୁଦ୍ଧ ଶାନ୍ତ ହୋଇ ବସିଛି
ଯାନା ତବ ସେବିକା ।
ତୁମ୍ଭେ ଆସ ଆସ ବୋଲି ତ
ନିତ ଡାକୁଛି କେତେ,
ଯେତେ ହେଉଅଛି ବିଳମ୍ବ
ପ୍ରେମ ବଢୁଛି ତେତେ ।
ତୁମ୍ଭେ ବଡ଼ ମୁଁ ତ ସାନ ହେ
ତୁମ୍ଭ ଆଦରେ ବଡ଼,
ତୁମ୍ଭେ ସଜ ଫୁଲ ସର ହେ,
ମୁଁ ତ ଫୁଟନ୍ତା କଢ଼ ।
ତୁମ୍ଭେ ତେଜୋବାନ ଆଦିତ୍ୟ,
ମୁଁ ତ କ୍ଷୀଣ ଚନ୍ଦ୍ରମା,
ଲଭି ତବାଲୋକ ପ୍ରଭୁ ହେ;
ବଢ଼େ ମୋର ସୁଷମା ।
ତୁମ୍ଭେ ପୂର୍ଣ୍ଣ-ସୁଧା-ସିନ୍ଧୁ ହେ,
ମୁଁ ତ କ୍ଷୁଦ୍ର-ସରିତ,
ତୁମ୍ଭ ପାଦତଳ ଅଧୀନ
ଥିବା ମୋର ଜୀବିତ ।



# ଶେଫାଳି ପ୍ରତି

ଶେଫାଳି !

କେଉଁ ଦୂର ତରୁବରେ ଫୁଟିଅଛୁ ଗୋପନେ,
ଝୁରୁଝୁରୁ ଗନ୍ଧ ତୋର ଭାସି ଆସେ ପବନେ;
ବାତାୟନ ପାଶେ ବସି          ଚାହେଁ ନବୋଦିତ ଶଶୀ
ହସି ହସି ସତେ ଉଇଁଆସେ ଦୂର ଗଗନେ,
ଭାବାବେଶେ ମୁଗ୍ଧ ମୁଁ କି ମଜ୍ଜିଅଛି ସ୍ୱପନେ !

ଭାବରାଜ୍ୟ ବୁଲେଁ ସତେ ହଜିଅଛି ଚେତନା,
ଅନ୍ତର ଅନନ୍ତ ରାଜ୍ୟ ପୂରିଅଛି କଳ୍ପନା;
ବିଶାଳ ଏ ବିଶ୍ୱକ୍ଷେତ୍ରେ          ଅର୍ଦ୍ଧ ନିମୀଳିତ ନେତ୍ରେ
ଦେଖେଁ ସତେ ଶୋଭାରାଶି ପଡ଼ୁଅଛି ଉଛୁଳ,
ଚହିଁ ସୁଧା ଢାଳୁ କରେ ଗନ୍ଧେ ଗଙ୍ଗିଉଳ ?

ଶାରଦ ଦିନାନ୍ତେ ବସି ବାତାୟନ ପାଶରେ
ବୁଡ଼ିଅଛୁ ମନ ମୋର କିବା ପ୍ରେମରସରେ;
ଆବେଶେ ପୁଲକେ ମୋର          ନୟନରୁ ବହେ ଧାର,
ହୃଦତନ୍ତ୍ରୀ ବାଜଉଠେ କି ଅମୃତ ସୁସ୍ୱରେ,
ନିମିଷେ ଭାବଇଁ ମୁଁ ତ ଅଛୁ ଅବା ସ୍ୱର୍ଗରେ !

ସାରାଦିନ ପରିଶ୍ରମ କ୍ଲେଶ କ୍ଳାନ୍ତ ଅଶେଷ,
ନାନା ଚିନ୍ତା ରୋଗ ଶୋକ କଷ୍ଟ ଦେଲା ବିଶେଷ;
ଯହୁଁ ରବି ଅସ୍ତାଚଳେ ଧୀରେ ଧୀରେ ଢଳିଗଲେ,
ସନ୍ଧ୍ୟାଗୀତ ଗାଇ ପକ୍ଷୀ ଫେରିଲେ ସ୍ୱସଦନେ,
ତମୋରାଶି ଢାଳିଦେଲା ନିଶା ଧରା ଆନନେ ।

ନୀଳ ନଭ ମଣ୍ଡି ଧୀରେ ହସି ପଦ୍ମଲୋଚନେ
ଦେଖା ଦେଲେ ଶତ ଶତ ତାରା ଜ୍ୟୋତିବସନେ,
ଅଙ୍ଗେ ବୋଳ ସୁଧା ରାଶି ଶଶୀଙ୍କ ଉଇଁଲ ଆସି,
ଝର ଝର ପଡ଼ିଲା କି ଭୁବନରେ ଅମୃତ,
ସତେ କି ଧରଣୀରାଣୀ ଦୁଃଖ ହେଲ ବିସ୍ମୃତ !

ରବି ବିରହରେ ଧନ୍ୟା କାନ୍ଦୁଥିଲା ମଉନେ
ଅନ୍ଧକାରେ ନତ କେତେ ବିଷାଦିତ ବଦନେ,
ଚନ୍ଦ୍ର କି ଆସିଲ ଉଇଁ ଚନ୍ଦ୍ରମା ଚୁମ୍ବିଲ ଭୁଇଁ
ହସିଲା କି ବସୁମତୀ ଗୃହୁ ଶୁଭ୍ର ଦୁକୁଳେ,
ଫୁଟିଲୁ ଶେଫାଳି ରତ୍ନ ଭୂ କି ପ୍ରେମ ଆକୁଳେ !

ଶେଫାଳି !

ମୃଦୁ ମୃଦୁ ଗନ୍ଧ ତୋର ଭସିଆସେ ପବନେ,
ଛନ ଛନ ପ୍ରାଣ ମୋର କି ଆକୁଳ ଗୋପନେ !
ସତେ ମୋର ଦୁଃଖରାଣି କ୍ଷଣେ କାନ୍ଦି ଚଳି ଭସି,
କେତେ କି କଳ୍ପନା ମନେ ଆସୁଅଛି ବିଜନେ,
କ୍ଷଣେ ପଡ଼ଅଛି ସତେ ଯାଇଁ ସ୍ୱର୍ଗଭୁବନେ !

ଶେଫାଳି !

କ୍ଷୁଦ୍ର ତୋର ତନୁ, ତହିଁ ଭରା ଏତେ ଅମୃତ,
ବହ୍ନିଲୀଳା କେ ବୁଝିବ, ଜ୍ଞାନାତୀତ ଅଦ୍ଭୁତ !
ଗୋପନେ ଫୁଟିଛୁ ଦୂରେ    ତରୁପତ୍ର ଗହଳରେ,
ତଥାପି ତୋ ବାସେ ମୋର ପ୍ରାଣ ହୁଏ ଆକୁଳ,
କହ କେଉଁ ଶିଳ୍ପୀ ତୋତେ ଗଢ଼ିଅଛି ରେ ଫୁଲ !

କି କୋମଳ କି ଲଳିତ କି ମଧୁର ସୁରଭି,
କର୍କଶ କୁତ୍ସିତ ପତ୍ରେ ଶୋଭେ କନ୍ୟା ଅଠଗା,
ବୃକ୍ଷ ପତ୍ରବଳି କୋଣେ    ଫୁଲ ଫୁଟୁ ଏତେ ଗୁଣେ,
ଲୁଚି ଲୁଚି ବାସେ ତାର ମୁଗ୍ଧ କରୁ ସଂସାର,
ମାତ ମଧ୍ୟେ ଉଚ୍ଚ ସୃଷ୍ଟି ବିଧାତାର ବିଚାର ।

ପଙ୍କେ ପଦ୍ମ ଗଢ଼ିଅଛି ବିଧାତା କି ଯତନେ,
ଶାମୁକା ଗରଭେ ନିହିଅଛି ମୁକ୍ତା ରତନେ,
କଳାମେଘ କଳେବରେ    ସୌଦାମିନୀ ଶୋଭା ଧରେ,
କଳା କୋକିଳ କଣ୍ଠରେ ପୂରିଅଛି ପୀୟୂଷ,
ତୁଚ୍ଛ ଭବେ ନୁହେ କିଛି, କ୍ଷୁଦ୍ର ତୋର ସଦୃଶ ।

ଶେଫାଳି !

ମନେ ମନେ ରୂପ ତୋର କଳ୍ପନାରେ ଆସେ କି,
ଭାବ ଭାବି କଥା ତୋର ଉଲ୍ଲାସରେ ଭାସେ କି ?
ଏକ ରାତି ପାଇଁ ଫୁଟି    ସୁବାସେ ଯାଉଛୁ ଲୋଟି,
କ୍ଷୁଦ୍ର ତୋର ଜୀବନରେ ସୁମହତ ବିକାଶ,
କ୍ଷୁଦ୍ର ବୋଲି ମୁହିଁ କିପାଁ ହୋଇବି ରେ ନିରାଶ ?

ଶେଫାଳି !

କ୍ଷୁଦ୍ର ମୁହିଁ ହୀନ ମୁହିଁ ରେଣୁକଣା ଜଗତେ,
ଚାହିଁଲେ ବିଶାଳ ବିଶ୍ୱ ଆସୁଛି କି ପରତେ ?
କ୍ଷୁଦ୍ର ହେଲେ ସୁଦ୍ଧା ମୁହିଁ          ଅକାରଣେ ଜନ୍ମି ନାହିଁ,
ଅନନ୍ତ ବିନାଶ ମୋର ଲେଖାନାହିଁ କପାଳେ,
ଏକ ରାତ୍ରି ପାଇଁ ଫୁଟି ଝଡ଼ିପଡ଼ି ସକାଳେ !

ଶେଫାଳି !

ନିତି ପ୍ରାତେ ଦେଖେଁ ପଡ଼ିଅଛୁ ତରୁମୂଳରେ,
ଟଳ ଟଳ ହିମବିନ୍ଦୁ ଶୋଭେ ଶୁଭ୍ର ଦଳରେ,
ସ୍ଫଟିକେ ପ୍ରବାଳ ପରି          ଗଠିତ ତୋ ତନୁ ତୋରା,
ମନୋନ୍ମାଦକର ତହିଁ ପୂରିଅଛି ସୁବାସ,
କି କୋମଳ କି ଲଳିତ କି ମୋହନ ବିକାଶ !

କି ଯତନେ ଆହରି ମୁଁ ଗୁନ୍ଥେ ମାଳା ଆଦରେ,
ପୁଲକିତ ପ୍ରେମସ୍ପର୍ଶେ ଦୋଳାଏଁ ମୋ କଣ୍ଠରେ,
ଧୀରେ ପରଶି ଅଧରେ          କେତେ ମୁଁ ତୋତେ ଆଦରେ
କି ବୁଝିବୁ ପ୍ରାଣହୀନ, ଆକୁଳତା ମୋହର,
କେତେ ପ୍ରେମ କରେ ତୋତେ ଗୋପନେ ମୋ ଅନ୍ତର ?

ଶେଫାଳି !

କହେଁ ତୋ ଆଗରେ ସବୁ, ତୁ କି ବନ୍ଧୁ ଜୀବିତ ?
ହେଲେ ମୋ ହୃଦୟ ଶତ ବେଦନାରେ ବ୍ୟଥିତ,

ଆପଣା ମନେ ମୁଁ ଭଣେଁ ତୋତେ ଶୁଣାଇବା ଆଶେ,
ଶୁଣୁ କି ନ ଶୁଣୁ ଏକା ଜାଣୁ ତୁହି ସୁମନ,
ବୁଝୁ କି ନ ବୁଝୁ ମୋର ଶତ ପ୍ରୀତି-ବଚନ ।

କହି କହି କିନ୍ତୁ ମୁହିଁ ଲଭେଁ ପ୍ରାଣେ ଆରାମ,
ତୋ ବୁଝିବା ନ ବୁଝିବା ମୋର ପକ୍ଷେ ସମାନ,
କହୁଥିବି ଦିବାରାତି, ପ୍ରାଣେ ତ ଲଭିବି ଶାନ୍ତି
ତୋ ଉଦ୍ଦେଶ୍ୟେ ଆରେ ଫୁଲ ମୋ ପ୍ରାଣର ଏ ବ୍ୟଥା,
ତୁ ନ ଶୁଣୁ, ଆଜି ଜଣେ ଶୁଣିବ ତ ମୋ କଥା ।

ଶେଫାଳି !

ମୋ ଜୀବନ ଶେଷ କାଳେ ପଡ଼ିବ ତ ମୁଁ ଝଡ଼ି,
ତୋଳିନେବ ନାହିଁ କି ସେ ମୋତେ ସ୍ନେହ ଆଦରି ?
ମୋର ଆତ୍ମାଫୁଲ ବୃନ୍ତୁ ଚରଣେ ଦଳିବାଠାରୁ
ତାର ପ୍ରିୟ ନିକେତନ ସଜାଇବ ନେଇ ସେ,
ତୋଡ଼ିବ ପ୍ରାଣଟି ମୋର କେତେ ପ୍ରେମ ଦେଇ ସେ ।

ଶେଫାଳି !

ତୋହ ପରି କ୍ଷୁଦ୍ର ମୁହିଁ, ତୋହ ପରି କ୍ଷଣିକ,
ହସେ ବାସେ ରସେ ମାତ୍ର ଫୁଟିଅଛୁ ଘଡ଼ିକ;
ମାଟିରେ ମିଶିବୁ ତୁହି, ମାଟିରେ ମିଶିବି ମୁହିଁ,
ତଥାପି ମୋ ଆତ୍ମାଫୁଲ ନ ଯିବ ରେ ମଉଳି,
ତେଣୁ ଆଶା ବନ୍ଧି ଦିନ କାଟେଁ ଗଙ୍ଗଶିଉଳି !

ଶେଷ ଗତ ନୁହେଁ ମୋର ମୃତ୍ୟୁ କେଉଁକାଳରେ,
ମରିବାକୁ ଫୁଟିନାହିଁ ଭବତରୁ ଡାଳରେ;
ଅଛୁ ରମ୍ୟ ଉପବନ ଯହିଁ ଫୁଟି ଶରଦ୍ଦନ
ଅନନ୍ତ ଅମୃତ ପ୍ରେମ ସୁଧାମୟ ସୁବାସେ
ମୋହିବ ମୋ ପ୍ରାଣପ୍ରିୟ ଦେବତାଙ୍କୁ ଉଲ୍ଲାସେ ।

ଶେଫାଳି !

ମୃଣ୍ମୟ ଶରୀର ତୋର ଏଡ଼େ ବୃନ୍ତୁ ଖୋଭିଲ,
ନ ଜାଣେ ମୋ ଆତ୍ମାଫୁଲ କ ସୌନ୍ଦର୍ଯ୍ୟ ଶକ୍ତି,
ତୁ ଯଦ୍ଧ ମୋ ନେବେ ପ୍ରିୟ, ତାଙ୍କ ନେବେ ହେବ ହେୟ
ମୁଁ କ କେଉଁକାଳେ, ମୋର ନ ହୁଏ ତ ବିଶ୍ବାସ ।
ଫୁଟିବି ମୁଁ ଶରଦ୍ଦନ, ନ ହେବ ମୋ ବିନାଶ ।



# ମା'

ଆଜି ଏକ କଣ୍ଠେ ମା' ବୋଲି ଡାକ ଦେ
ତେତିଶ କୋଟି ମାଆର ସନ୍ତାନ,

ମା' ନାମ ମହିମା ଶକ୍ତିରେ ଉଠ
ଦୁର୍ବଳ ଖିନ୍ନ କର୍ମମାନ,

ମା' ନାମ ଗରିମା ଗିରି ହିମାଚଳେ
ଶତ ଶତାବ୍ଦୀର ତୁଷାର ଉଜ୍ଜ୍ୱଳେ

ମାତୃ ସ୍ନେହ ଝର
ଗଙ୍ଗା ସିନ୍ଧୁ ଧାର

ବ୍ରହ୍ମପୁତ୍ର ବହେ ପବିତ୍ର କଲ୍ଲୋଳେ,
ଉଠେ ମହାଗୀତ ବ୍ୟୋମେ ଜଳେ ସ୍ଥଳେ ।

ମା' ନାମର ସ୍ମୃତି ଅନ୍ତରେ ଉଚ୍ଛୁଳେ,
ବିନ୍ଧ୍ୟାଦ୍ରି ସହ୍ୟାଦ୍ରି ମଳୟଗିରି କୋଳେ
ରେବା ଗୋଦାବରୀ ଗାଆନ୍ତି ନିର୍ଭୋଳେ ।

ଶିରୀ ବୃନ୍ଦାବନେ ଚନ୍ଦନ ବନେ ବଦ୍ରିନାୟଣେ
ମା' ନାମର ମନ୍ତ୍ର—
ବାଜେ ହୃଦ-ଯନ୍ତ୍ର ମଧୁର ନିକ୍ୱଣେ ।

କିଏ ସେ ଭ୍ରମର, ଭେଦ ନାହିଁ ଯା'ର ହୃଦ ଅଭ୍ୟନ୍ତର
ମା' ନାମରେ ଭକ୍ତ ?

କିଏ ସେ ଦୁର୍ବୃତ୍ତ,
ମା' ନାମ ଶ୍ରବଣେ ନୁହେଁ ସେ ମୋହିତ ?

ଭାରତର କୁଳେ କିଏ କୁଳାଙ୍ଗାର,
ମା' ନାମେ ନୟନେ ନାହିଁ ଯାର ଧାର ?

ମା' ତବ ଆମର ତ୍ରିଲୋକ-ପାବନୀ
ଗାୟତ୍ରୀ, ସାବିତ୍ରୀ ବିଶ୍ୱ-ପ୍ରସବିନୀ,
ବେଦ ବେଦାନ୍ତର ଜନନୀ, ମୋହିନୀ,

ନିଖିଳ ଅବନୀ ଜ୍ଞାନ ପ୍ରଦାୟିନୀ;
କାବ୍ୟ କଳା-ଶିଳ୍ପ ଲୀଳା ବିଳାସିନୀ,
କୋଟି କୁଞ୍ଜବନ-କୁସୁମ ମାଳିନୀ,
କୋଟି କଳ୍ପତରୁ-ବଲ୍ଲୀ-ରସାଳିନୀ,
ମନୋଜ୍ଞ-ମାନସ-ହେମ ମୃଣାଳିନୀ ।

ମା' ତବେ ଆମର ଜ୍ଞାନ ବିଜ୍ଞାନର
ଆଦ୍ୟ ଲୀଳା ଭୂମି,
ପ୍ରଥମ ଓଁକାର ଝଙ୍କାର ଉଠିଲା ଯହିଁ ନଭଃ ଚୁମି ।

ବୁଡ଼ିଥିଲା ଯେବେ ଭାରତ ଅବନୀ ଅଜ୍ଞାନ ତମିରେ,
ଉଜ୍ଜ୍ୱଳ ଥିଲା କେ ଶଦ୍ୟାଧରମ ହେମ ଯାଧିରରେ ?

ଆଜ ହେଉ ତାର ହୀନ ଅଧୋଗତି;
ଘୁଞ୍ଚି କି ତୁମର ନୁହାଁଇ କରନ୍ତି ?

ନାହିଁ କି ହେ ଉଷ୍ଣ ରକ୍ତ ଧମନୀରେ,
ବ୍ୟଥିତ ନୁହେଁ କି ମାତୃ ଆରତରେ ?

ଉଠ ଉଠ ତେବେ ଉଠ ମୋର ଭାଇ,
ଆର୍ଯ୍ୟତେଜଃ ତବ ରକ୍ତୁ ଯାଇ ନାହିଁ,

ମାତୃନାମ ମନ୍ତ୍ରେ
ଉଠ ହେ ଏକତ୍ରେ
ତେଷ ଶ କୋଟି ମାତୃ ସ୍ତବ ଗାଇ ।



# ପୁରୁଣା ଓଡ଼ିଆ

ଭଗ୍ନ କୁଟୀରେ ହେ କୃଷକ ଭାଇ
ଅର୍ଦ୍ଧ ମୃତ ତୋର ପରିବାର,
ନିତ କ୍ଲାନ୍ତ ନିତ ଖଟଣି ସାର ତୋ;
ନ ମିଳଇ ପୂର୍ଣ୍ଣ ଆହାର ।

ନଷ୍ଟ ବଢ଼ି ପାଣି ଧୋଇ ଦେଲା ତୋର
ଯତ୍ନ କର୍ଷିତ କେଦାର,
ନଗର ନିବାସୀ ନ ବୁଝିଲେ କେହି;
ଲୁଟି ନେଲେ ତୋର ଭଣ୍ଡାର ।

ଧନ-ଖଣ୍ଡ ରକ୍ତ-କ କର ଯନ୍ତ୍ର ରୁ
ଚଳେ କେତେ କାମ କରନ୍ତୁ;
ମହାଜନ ଦାଉ ଟିକସ ଜଞ୍ଜାରେ
ନିତ ନିତ ଆୟୁ ସାରୁ ।

ଦୀର୍ଘ ହତାଶ ନିଃଶ୍ୱାସ ତୋର
ଆଉ ନ ମିଶିବ ମାଟିରେ;
ଦେଢ଼ କୋଟି ଆଜ ଉଠିବେ ଓଡ଼ିଆ
ଜଡ଼ତାର ମୋହ କାଟିରେ ।

(ଗ)

ହେ ଧାନ ଶିଳ୍ପୀ ! କୁଟୀରେ ତୁମର
ଅସ୍ତ୍ର ପଡ଼ୁଛୁ ଅଳସେ;
ବିଦେଶୀ ବିଳାସ ବ୍ୟସନେ ମାତିଲୁଁ
ଧନ ଆମେ ବୃଥା ଭଳସେ ।

ନ ସ୍ମରିଲୁ ତୋର ପୂର୍ବର ଗୌରବ;
ନ ଗୁହିଁଲୁ ହୀନ ଦଶା;
ଆପଣା ଚରଣେ ହାଣିଲୁ କୁଠାର,
ଜଗତେ କ ଲୋକ ହସା ।

ଭସ୍ମ ନାହିଁ ସ୍ତର ଜାଗିଲଣି ଏବେ
ପୁରୁଣା ଓଡ଼ିଆ ପ୍ରାଣ,
ଶିଳ୍ପ ଶିକ୍ଷା କ୍ଷେତ୍ର ମଣ୍ଡିତ ହେବ
ମଧୁର ରଚିବା ଠାଣ ।

ଗୃହା ବଗିଚର କୁଳଗିର ଆଜ
ନ ଡାକିବ ଆମ ସୁତେ,
ଆପଣା ଗୋଡ଼ରେ ଛିଡ଼ା ହେବେ ସେହି,
ଉଚ୍ଚ ହେବେ ନିଜ କୃତେ ।

ନିଜ ହାତେ ନିଜେ ହେବେ ସେ ମଣିଷ,
ନ ଗୃହିଁବେ ପର ଦୁଆରେ;
ମୁକ୍ତି-ତରଣୀ ଭାସିବ ଏଥର
ରକ୍ତର ପାରାବାରେ ।

(ଗ)

ହେ ବୀର ବନ୍ଦି ! କାରାଗାର କୋଣେ
କଳଙ୍କିତ ତବ ଅସି,
(ଏବେ) ଝଲେ ନବ ଜ୍ୟୋତିଃ ଅସ୍ପୃଷ୍ଟ ଫଳକେ
ଲିଭି ଯାଇଅଛୁ ମସି ।

କିଏ ହସି ହସି ଦେବ ପ୍ରାଣ ବଳି,
ବଣ୍ଟା ଡାକୁଛୁ କାହାକୁ ?
କିଏ କାନ୍ଦି କାନ୍ଦି ଗାଇବ ଗୀତଟି,
ଆଗୁଁସାର ସବୁ ଦେବାକୁ ?

କିଏ ବହି ନେବ ଛିନ୍ନ ପତାକା;
ଉଠାଇବ ବୀର-କେତନ ?
ଆସ ଅଗ୍ରେ ଆସ ତରୁଣ ତପସ୍ୱି !
କୋଟି କଣ୍ଠ ଡାକେ ସଘନ ।

# ଭାରତ ରମଣୀ

ସଫଳ ଜନମ, ସଫଳ ଜୀବନ,
ମୁଁ ପରା ଭାରତ-ରମଣୀ,
ମୋ ତ୍ୟାଗ ପୁଣ୍ୟ ସହିଷ୍ଣୁତା ଗୁଣେ
ମୋହିତ ନିଖିଳ ଧରଣୀ ।

ନାରୀତ୍ୱର ପୂଜା, ନାରୀତ୍ୱେ ଆଦର
ଲଭି ଶ୍ରେଷ୍ଠାସନ ଜାଣ୍ଟୁ ଜନମର,
ବୀର୍ଯ୍ୟ ବିଧାନେ ମୁଁ ଶକତି, ସାବିତ୍ରୀ,
ମୁଁ ଶାରଦା, ଲକ୍ଷ୍ମୀ ରୂପିଣୀ ।

ପ୍ରବୃତ୍ତି ନୁହେଁ ମୋ' ନିବୃତ୍ତି ପନ୍ଥା,
ସଂଯମ, ଶାନ୍ତ ଜୀବନେ ଗୁନ୍ଥା,
ବୈଧବ୍ୟ ବସନେ ! ଶତାର ଦହନେ;
ମୂର୍ତ୍ତିମତୀ ଧର୍ମ ଧାରଣୀ ।

ଆତ୍ମ ଶକ୍ତି ଲୀଳା ନର କଳେବରେ
ଉଠିବ ଝଣ୍ଡ, କଟାକ୍ଷ ମାତରେ;
ମୁଁ ତ ଆଦ୍ୟାଶକ୍ତି
ଭକତ ଆରତ ଅନ୍ତିମ ମୁକ୍ତି ସରଣୀ ।



# ଅଭିଶପ୍ତର ଅଭିମାନ

(୧)

ଜାଣେ ଏ ଜୀବନ କେଭେଁ ନ ହେବ ସଫଳ,
ଅକାରଣ ନୁହେଁ ମୋର ଜସ୍ର ଅଶ୍ରୁଜଳ ;
ନବଜ ନସ୍ତୁର ଘନ ଗହନ ଅନ୍ଧାରେ
ନ ମରିବ ଚିରଦିନ ତୀବ୍ର ହାହାକାରେ ।
ଅମିୟ ଅରୁଣ ଭାତି
ନାଶିବ ତିର ରାତି,
ଅମୃତ ଆନନ୍ଦେ ମୁହିଁ ଅନନ୍ତ ଜୀବନେ
ଜାଗିବ ଜାଗିବ, ଗୁପ୍ତ ଆଶା ମୋର ମନେ ।

(୨)

ଦୁର୍ବଳ କୋମଳ ମୁହିଁ ମଳିନ ଅଧମ,
କୋଟି କର୍ତ୍ତବ୍ୟ ପାଳନେ ସତତ ଅକ୍ଷମ,
ଶତ ଶତ ଭୁଲ ଭ୍ରାନ୍ତି,
ଦାରୁଣ ଦୁଷଣ ଶ୍ରାନ୍ତି,
ଘେରିଛି ଜୀବନ ମୋର ସହସ୍ର ଜଞ୍ଜାଳ,
ତଥାପି ନୁହେଁ ମୁଁ ସଖା ମୃତ୍ତିକା କଙ୍କାଳ ;
ଅମୃତ ସନ୍ତାନ ମୁହିଁ ସୁଧା ଅଧିକାରୀ,
ଅନନ୍ତ ତମିର ତଳେ ଗୁପ୍ତ ଘପଧାରୀ ।

(୩)

ଲାଞ୍ଛନା ଗଞ୍ଜନା ସେତ ଭର୍ତ୍ସନା ଜୀବନେ,
ପଦେ ପଦେ ଅପମାନ ପୀଡ଼ଇ ମରମେ,
ତୀକ୍ଷ୍ଣ ଶେଳ ଶିଳା ଅବା କଠିନ କୁଳିଶ-
ପ୍ରହାରେ ଜର୍ଜର ହୁଏ, ଜୀବନ ମୋ ବିଷ;
ତଥାପି ଅମର ମୁହିଁ ମାନବ ସନ୍ତାନ,
ବ୍ୟର୍ଥେ ଏ ପୃଥିବୀ ମୋତେ ନ କଲା ଆହ୍ୱାନ ।

ତଳେ ତଳେ ଏ ଜୀବନ
କରିବଟି ନିବେଦନ,
ପାପସୃଷ୍ଟି ପାର ମୁହିଁ ପ୍ରଚ୍ଛନ୍ନ ଦେବତା,
କରମକରତା ମୁହିଁ ମୋ ଭାଗ୍ୟନିୟନ୍ତା ।

(୪)

କରୁଛ କି ପରିହାସ ଦେଖି ଦୀନ ବେଶ,
ଅର୍ଦ୍ଧ ଅନଶନେ କ୍ଷୁଦ୍ର କୁଟୀରେ ମୋ କ୍ଳେଶ ?
ତପତତପନ ତଳେ ଛନ୍ନ ସ୍ୱେଦଜଳେ
ରୁକ୍ଷ ବକ୍ଷଧରା ମୁହିଁ ଚଷଇ ଲଙ୍ଗଳେ;
ଅବା ଭିକ୍ଷା ପାତ୍ର ଧରି
ସରମେ ମରମେ ସରି
ତବ ରମ୍ୟ ହର୍ମ୍ୟ ତୋରା ତୋରଣ ସମ୍ମୁଖେ
କାନ୍ତ ପଦକ୍ଷେପେ ଆସେ, ନ ବୃହୁଁଛ ମୁଖେ ।

(୫)

ଲଜେ ପୋତି ମଥା ଦୂରେ ଯାଅ ମୋର ଭାଇ,
ନ ଚହ୍ନ ନ ଚହ୍ନ ମୋତେ ନ ହେବ ବଥାଇ ।

ତିଳେ ତିଳେ ପ୍ରାଣ ମୋର କରିବ ଅର୍ପଣ
ତବ ଶତ ସୁଖ ଯହିଁ ହେବଟି ବର୍ଦ୍ଧନ ।

ବଞ୍ଚିବାର ଅଧିକାର ରଖ ଚିରଦିନ,
ମରଣେ ସମ୍ବଳ କର ହେଉଥାଏଁ କ୍ଷୀଣ ।

ତଥାପି ମରିବ ନାହିଁ,
ମନେରଖ ଏହା ଭାଇ,

ଏ କାରଣେ ଜନ୍ମ ମୋର ନ ହେଲା ଭୂତଳେ,
ଅନନ୍ତ ବିନାଶ ଯେନ ମରିବ ବିରଳେ ।

ଅନନ୍ତ ବିକାଶ ମମ
ଚିରଦିନ ଅନୁପମ,

କଷଣ-କର୍ଦ୍ଦମେ ପଦ୍ମ ମୁହିଁ ଶତଦଳ,
ନ ହେବ ବିଫଳ ମୋର ତପ୍ତ ନେତ୍ରଜଳ ।

(୬)

ପାଷାଣେ ପିଷ୍ଟିତ ଭାଗ୍ୟ ବଜ୍ରହତ ସଖା,
ପାଷାଣ ପ୍ରାଣରେ ତେଣୁ ନ ପଶଇ ଦକା ।

ଉଚ୍ଛାସନେ ହୃଙ୍କମନେ ଆଗ୍ରମ ଶପୁନେ
ହସୁଛ ଦିବଯାମିନି, କାନ୍ଦେ ମୁଁ ଅପୁନେ ।

ମୋ' ରକ୍ତ ତପତ ଧାରେ,
ମୋର ହୃଦ ହାହାକାରେ

ବୁଡ଼ି ରହିଅଛି ତବ ଜୀବନସମ୍ପଦ,
ନ ମିଳେ ମୁକତି ମୋତେ ଧ୍ୟାଇଣ ଶ୍ରୀପଦ ।

ତୁମେ ବୀର ତୁମେ ଗୁଣୀ,
ମୁଁ ହୀନ ଅଜ୍ଞାନ ଋଣୀ,

ତୁମର ସଭ୍ୟତା ପାଶେ ତୁମର ଆଲୋକେ,
ତୁମ ଘୃଣା ବାସ ମୋର ଅନନ୍ତ ନରକେ ।

ନ ହାବ ନ ଭାବ ଭାଇ,
କେହ୍ନ କେବେ ଶୁଝି ନାହିଁ

ନିଷ୍ଠୁର ପୀଡ଼ନ ଦାଉ ଦେ'ଣା ଗୋଟି ଗୋଟି,
ଥାଅ ସୁଖେ, ଭୋଗେ ମୁହିଁ କଷ୍ଟ କୋଟି କୋଟି ।

(୭)

ଊର୍ଦ୍ଧ୍ୱ ଦୁର୍ଗମ ଯଦ୍ୟପି ଏ ଘନ ବିପିନ,
କଣ୍ଟକ ପରଶେ ହାସେ କାନ୍ଦ ତନୁ କ୍ଷୀଣ,

ସହିବ ସହିବ ମୋର ଅଜ୍ଞାତ ନିବାସ,
ନିଜ ତେଜେ ଦିନେ ମୁହିଁ ହେବି ସ୍ୱପ୍ରକାଶ ।

ଯେ 'କରେ' ସୁଖରେ ହର ଦ୍ରୌପଦୀ ବସନ,
ସେ କର ଭଞ୍ଜନେ ଲଜ୍ଜା ହେବ ନିବାରଣ ।

ରଞ୍ଜାଇବ କେଶରାଶି
ରକତେ ଆନନ୍ଦେ ଭାସି,

'ଭୀମ ଭୁଜେ ବନ୍ଧାଇବ; ଦର୍ପୀ ଦୁଃଶାସନ
ବୃକୋଦର ଗଦାଘାତେ ତେଜବ ଜୀବନ ।

(୮)

ଲଙ୍କା ନଗରେ ବନ୍ଦିନୀ ଜନକନନ୍ଦିନୀ,
'ଦଶଆନନ ଦଳନେ କାନ୍ଦଇ ଉନ୍ମାଦିନୀ—
କହିଛ କେବାର ସୀତା ସରମ-ଆକୁଳା,
ଉଠୁଛି ଗୋପନ ଶଙ୍କେ ଶତାର କୁହୁଳା,

ଜଳିବ ସେ ଦାଉ ଦାଉ,
ଭସମିବ ରୁହୁଁ ରୁହୁଁ,

କନକ-କମଳ-କାନ୍ତ ଲଙ୍କା ଭବଶଙ୍କା,
ଅହଙ୍କାର ଊର ଶିର ପାଦେ ହେବ ରଙ୍କା ।

ଧୈର୍ଯ୍ୟ ସହିଷ୍ଣୁତା ସତ୍ୟ ଶ୍ରୀରାମ-ଜାନକୀ-
ଲକ୍ଷ୍ମଣ ବଜାଏ ବାନା ଉଡ଼ିବ ଝଟକି !

ଯୁଗ ଯୁଗାନ୍ତର ଯଶ ଗାଇବ ଗଗନ—
ଗହନ ସାଗର ଶୋଭି ବିଶାଳ ଭୁବନ ।

(୯)

ଶୁଣିଛୁ ତପରେ ଯିବ ତାପର ତପସ୍ୟା,
କାନନ କନ୍ଦରେ ଗୌରୀ ଗିରିଜା ବିବଶା;
ଶିବ ପତି ନ ଲଭି ସେ, ଅସତୀ ବୋଲାଇ
ଶାନ୍ତିରୂପେ ବୃଥା ପିତୃଗୃହେ ମରି ନାହିଁ ।
ମହାପତିଯୋଗ ଭଙ୍ଗ
କରିବ ଦେବ ଅନଙ୍ଗ,
ନେତ୍ରାନଳେ କଳେବର ଯଦି ବା ଦହିବ,
ପରଜନ୍ମେ ପତି ମରି ସେ ବଞ୍ଚିବ ।

(୧୦)

ଅକାରଣେ ପାଷାଣ ଏ ଅହଲ୍ୟା ସୁନ୍ଦରୀ,
ଅରପିବେ ଶିରେ ପଦ ଶ୍ରୀପାଦ ଶ୍ରୀହରି ।
କହିଁ କଳଙ୍କିନୀ ରାଧା ହେବ ଗୋପକୁଳେ,
ମୋହନ ମୁରଲୀ ତାନେ କଦମ୍ବର ମୂଳେ
ଗୁହ୍ନ ପିଣ୍ଡ ପରିଜନ
ଧାଇଁ ଉନ୍ମାଦିନୀ ସମ
ଅନନ୍ତ ଅଶ୍ରୁ ସାଗରେ ବୁଡ଼ିବ କି ଶରୀ,
ନ ଭିଦିବ ଶିଳାକାଣେ ବ୍ରଜର ମିହିର ?
କପଟ କପଟ ଶ୍ୟାମ
ଢାକିଲେ ରାଧାର ନାମ
ବଜାଇ ଝୁରିବେ ପରି ଦିବସ ଯାମିନୀ,
ଯମୁନାର ନୀର ଯେବେ ଚୁମ୍ବିବ ରୁକ୍ମିଣୀ ।

(୧୧)

ମିଛେ କି କୋକିଳ କେବେ ଡାକେ କଳଗିର
ନ ବହିଲେ ମୃଦୁ ମଧୁ ମଳୟ ସମୀର ?
ମିଛେ କି କୁମୁଦ-ଆଖି
ଇନ୍ଦୁ ପାଦେ ରହେ ଲାଗି,
ଶତ ବର୍ଷେ ସବିତ୍ରୁ ସେ ନ କଲେ ଚୁମ୍ବନ,
ଶୀତଳ ଶିଶିର ଛଳେ ସ୍ନେହ ଆଲିଙ୍ଗନ ?
ନୀରବ ରଜନୀ ଧୀର ଗମ୍ଭୀର ସ୍ୱସ୍ୱରେ
ଝିଲ୍ଲୀରବେ ଆଶାଗୀତ ଗାଏ ଶ୍ରାବଣରେ ।
ଅନନ୍ତ ଅବ୍ୟକ୍ତ ଶାନ୍ତ ପୂରେ ତ ପରାଣେ,
ମିଛେ କି ଜୀବନ ରହେ ଆନର ଧିଆନେ ?

( ୧୨ )

ଅକାରଣେ କ୍ରୌଞ୍ଚପକ୍ଷୀ ନ ତେଜିବ ଜୀବ,
ରାମାୟଣ ପଣା ପରି ପୃଥିବୀ ପିଇବ,
କବି କୁଳଗୁରୁ ହେବେ ଶ୍ରେଷ୍ଠ ରତ୍ନାକର ;
ବୋଲାଇବେ ବାଲ୍ମୀକି ମହର୍ଷିପ୍ରବର ,
ଅକାରଣେ ବନବାସେ ନ ଯିବ ଜାନକୀ,
ସତୀଙ୍କ ଗୌରବ ପରି ଉଠିବ ମହକି !
ପାଇ ପୁତ୍ର ଅଧିକାର
ରଘୁନାଥ ନେତ୍ରଧାର
ପୋଛନ୍ତୁ ଲବକୁଶ ଯୁଗ ଧନ୍ୟ ହେବେ ଭବେ,
ଅକାରଣେ କ୍ରୌଞ୍ଚୀ ଶୋକ ନ କଲା ବୈଧବ୍ୟ ।

(୧୩)

ସ୍ୱଚ୍ଛ ସ୍ୱାଚ୍ଛୁ ସ୍ୱାମ ଭୃଙ୍ଗ ଦଳୁଛ ତରଙ୍ଗେ,
ଅପଦସ୍ଥ, ମ୍ଳାନ, ଭସ୍ମେ ପରଶ ଅରଙ୍ଗେ ;
ଶରଦନ ସମତୁଲ ନ ଥିବ ତୁମର,
କେବେ ତୁମେ ତଳେ, କେବେ ଦେଶ ମୁଁ ଉପର;
ତୁମର କଷ୍ଟ ମୋର ହେବ ଶିରଶୋଭା,
ମୋହର ମୋହିନୀ ଦନେ ହେବ ମନୋଲୋଭା ।

ଆଜ ଯା'ରେ ପଦାଘାତ,
କାଲି ତା'ର ଧର ହାତ

ଆଦରେ ଅଞ୍ଚଳନିଧି ଅଙ୍କ ଆସନରେ
ରଖିବ ରତନ ସମ ସ୍ନେହ ଯତନରେ ।

(୧୪)

ବନ ! ଚେତନା ତବ ସନ୍ତପ୍ତ ମରବେ,
ଗୋଟିଏ କଥା ମୋ' ମୁଖେ ନ ଶୁଣିବ ଭବେ ;
ତଥାପି ନିଃଶ୍ୱାସ ମୋର ଫଟାଇ ପାଷାଣ
କରିବ ବିଦୀର୍ଣ୍ଣ ତବ ଅହଂକାରୀ ପ୍ରାଣ ।
ଆଜ ଯାକୁ ତୃଣ ସମ କର ତୁଚ୍ଛ ହେୟ,
କାଲି ସେହି ହେବ ତବ ଶ୍ରେୟ ତବ ପ୍ରେୟ ;
ଆଜ ସେ ତୁମର ବନ୍ଦୀ କଠିନ ଶୃଙ୍ଖଳେ,
କାଲି ପୂଜାଫୁଲ ହେବ ତା'ର ପାଦତଳେ ।

ଆଜ ତୁମେ ଯାର ସତ୍ତ୍ୱ,
କାଲି ତବ ପ୍ରେମବାତ୍ତ୍ୱ
ଭରି ଅନ୍ନଜଳ ତା'ଙ୍କୁ ଦେବ ଦେବାସନ,
ତା' ଗୁଡାଏ ମୋହିବ ତବ ମୂଢ଼ ଅନ୍ଧ ମନ ।

(୧୫)

ଅସ୍ପୃଶ୍ୟ ଇତର ମୂର୍ଦ୍ଧି ଘୃଣିତ ଚଣ୍ଡାଳ,
କଠୋର ପରଶ୍ରେ ତବ ନରକ ଜଞ୍ଜାଳ;
କାଲେ ବନ୍ଧନଏ ବୋଲି ଦୁଃଖର ଖରରେ
"ବେଦେବ, ବେଦେବ" ଡାକ ଶୁଣାଅ ଶ୍ରଦ୍ଧାରେ ।
ମୂର୍ଦ୍ଧି ପଦସେବାକାଶ
ଭୃତ୍ୟ, ପୂଜାଶ, ଭଣ୍ଡାଶ,
ବୋଲଉଛ ବାବୁ ବସି ଉଚ୍ଚ ଆସନରେ,
ଲାଜ ଲୁଚୁଅ କରୁ ମୋ ଦତ୍ତ ବସନରେ ;
ମୋ ଦତ୍ତ ଅଶନ ପୁଣି କସ୍ଵନ ଭୋଜନ,
ତୁଙ୍ଗ ପ୍ରାସାଦରେ ତୁମେ, ତଳେ ମୋ ବେଦନ ।

(୧୬)

ଅଗାଧ ଐଶ୍ୱର୍ଯ୍ୟ ତବ, ମୁଁ ହୀନ ମୂଲିଆ,
ତୁମେ ଶୁଭ୍ର ସିଂହାସନେ, ମୁଁ ପାଦତଳିଆ ;
ମୋ ରକତ-ସିକ୍ତ ମନ୍ଦି ଦରପ-ମଦରେ
ଦୁଇଦନ ହସୁଥାଅ ଭାସି ଅମୃତରେ ।

ଗ୍ରୈରଇ ଚନ୍ଦ୍ର ମାଣିଷ ବୋଲଅ ଦେବତା,
ହଏଁ ମୁଁ ଲଞ୍ଜିତା ଚିର ପଦଅବନତା ।
ଉଠିବ ଉଠିବ ଭାସି
କରାଳ ଗରଳରାଶି,
ନୀଳକଣ୍ଠ ଲେଉଡ଼ା ତହିଁ ହୋଇବ ଭୂମର,
ବେଳହୁଁ ଦୁର୍ବାର ତବ ବାସନା ସମ୍ବର ;
ନୋହିଲେ ଖ୍ରଷଣ ରଣ ସୁରାସୁରଗଣେ
ରଚିବ ଶ୍ମଶାନ ତବ ମନ୍ଦାର-ନନ୍ଦନେ ।

(୧୭)

କର୍ଣ୍ଣ ବାହୁବଳେ ଆଜ ତେଜା ଦୁର୍ଯୋଧନ
କୃଷ୍ଣାର୍ଜ୍ଜୁନେ ଦେଖୁ ଜ୍ଞାନ କରେ ତୃଣ ସମ ,
ନ ଭାବୁଛ ମନେ ଅଛି 'ଆଞ୍ଜଳିକ' ଶର,
ଅଭିମନ୍ୟୁ ବଧ ଶୋଧ ଲଭିବ ନକର ।
ଜତୁସଦନ ଦାହନ !
ଭୀମ ଗଦାରେ ଉଗନ—
ହେବ ସେ ଗର୍ବିତ ଜାନୁ, ତେଜିବ ଜୀବନ,
ଅନ୍ୟାୟ-ଆହବେ ପରା ବଳାଇଛ ମନ !

(୧୮)

ଚିରଦିନ ଚନ୍ଦ୍ର କା'ର ନ ଉଦେ ଆକାଶେ,
ଚିରଦିନ ନ ଘଟେ କେ ସମ୍ପଦ ବିଳାସେ ;
ଚିର ପରାଜିତ ନୁହେଁ ନ୍ୟାୟ ଯୁଧିଷ୍ଠିର,
ଚିର ମନ୍ତ୍ରେ ନ ଲଭିବ କେହି ବଳୁଆର ।

ଥାଉ ତବ ପକ୍ଷେ ଲକ୍ଷ ନାରାୟଣୀ ସେନା,
ଏକା ନାରାୟଣ ମୋର ରକ୍ଷା ବଜ୍ର-ବେଢ଼ା ;

ଥାଆନ୍ତୁ ସହସ୍ର ରଥୀ,
ଏକା ମୋ ରଥ ସାରଥୀ

ନିରସ୍ତ୍ର ନନ୍ଦନନ୍ଦ କୃଷ୍ଣ କ୍ଷୁଦ୍ର ବଂଶୀଧାରୀ,
ଗୀତା ଗାନେ ପ୍ରାଣେ ମୋର ବର୍ଷେ ଶାନ୍ତିବାରି ।

( ୧୯ )

ହାକ ମୋ ମୂର୍ଚ୍ଛିତ ମୁଖେ ଦଣ୍ଡ କରିତାଳ,
ମରେଁ ମୁଁ ଦରିଦ୍ର ଷୋଡ଼େ ଶତ୍ରୁ ଶତା ଜାଳ ;

ନାହିଁ ମୋର ବାସ, ଅଛୁ ମହାକାଶ ତଳେ,
ନାହିଁ ମୋର ହେମଶଯ୍ୟା, ଶୁଏଁ ମୁଁ ଭୂତଳେ ;

ଶୀତ ଝଡ଼ ବରଷାରେ
ପ୍ରକୃତିର ଅତ୍ୟାଚାରେ

କ୍ଷୀଣ ଅଙ୍ଗଶିରା ସବୁ ଆୟୁ ଯାଏ ହରି,
ତଥାପି ବଞ୍ଚିବ ନଶ୍ବେଁ ଏ କଷଣେ ମରି ।

ମରଣ ନୁହେ ମୋ କ୍ଳେଶ,
ନୁହେ ତା ବିନାଶ, ଶେଷ,

ଅଦ୍ଭୁତ ସୁନ୍ଦର ନବ ଜୀବନ ଆରମ୍ଭ,
ମୋ ମରଣେ କିନ୍ତୁ ତବ ଜୀବ କି ସମ୍ଭବ ?

( ୨୦ )

ଧମ୍ମଳଦ୍ୱୀପର ଶେଷ ଆଶାର ସମ୍ବଳ
କାଢ଼ିନେଲ ଗୀତେ ଯଥା ଶୀତାର୍ତ୍ତି-କମ୍ବଳ;

ଭାବିଲ ମହତ ଏକ କରମ ସାଧିଲ,
ବୈରଭାବେ ହୀନ ଅରି ଜୀବନ ବଧିଲ,

କିନ୍ତୁ 'ରକ୍ତବୀଜ' କେବେ ମରି ସେ ନ ମରେ,
ଶତ ଶତ ଦୈତ୍ୟ ଜାତ ବାନ୍ଧ ରକ୍ତରେ ।

ଖଡ୍ଗ ହସ୍ତେ ହାଣି ଶିର
ବୁହାଇଲ ଯେ ରୁଧିର,

ନନ୍ଦ ପିଣ୍ଡ ହୋଇ ଶେଷେ ବୁଡ଼ିବ ଆପଣ,
ନେଉଛି ତ ପ୍ରତିଫଳ କୃପାରେ କୃପଣ ।

( ୨୧ )

ପଦେ ଦଳ ଫୁଲ ଗୋଟି ହେଲ କି ଗୌରବ,
ମଥିତ ବ୍ୟଥିତ ତା'ର ସ୍ଫୁରିଲ ସୌରଭ ;

ମରି ସେ ମରିଲ ନାହିଁ,
ହଜାଇଲ କାହିଁପାଇଁ

ତାର ଶୋଭାଶିଖା ହାସ ଅକାଳେ ହେଳାରେ,
କିଏ ଜିତେ କିଏ ହାରେ ବୁଝି ଏ ଖେଳାରେ ।

ନିଜର ଆନନ୍ଦ-ଧନ ସାରିଲ ଭୁଞ୍ଜାଇ,
ନିଜ ହସ୍ତେ ଜିହ୍ୱା ଛେଦ କରିବ କାହାକୁ ?

( ୨୨ )

ଭାବିଲୁ ବୁଡ଼ିବ ତରୀ କଦଳୀ ଭେଳାରେ,
ଅନନ୍ତ ଅମ୍ବୁଧି ତଳେ ଗୁହିବ ଗେଲ୍ହାରେ ;

ଆଦରେ ମରଣ ମୋର, ନିଷ୍ଠୁର କାଣ୍ଡାର !
ଘନ ପ୍ରଭଞ୍ଜନେ ଊର୍ମି ସାଗର ଫଦାର ।

ସହସା ଅତଳେ କୂଳ
ଲଭୁ ମୋ ଭରସା ଠୂଳ

ହେଲଣି ଅଭୟ ପାଦେ, ଦସ୍ୟୁର ଠାକୁର
ଶୁଣିଲେଣି କାକୁ ମୋର, ଶୁଣ ଶୁଣ ହୂର !

( ୨୩ )

ଯଦି ମହାସାଗରତର ମହାସିନ୍ଧୁ ଜଳେ
ବୁଡ଼ି ମୁଁ ଚିତ୍କାରେ କାନ୍ଦେ କୃପା ପାଦତଳେ,

ତୋଳନେବେ ବହ୍ମାଣ୍ଡ ସେ ପ୍ରେମମହାବାହୁ
ଗରୁଡ଼-ଶେଖରସନ ଦେବେ ଗୃହୁଁ ଗୃହୁଁ ।

ଚନ୍ଦ୍ରି ମାନ-ସରୋବର-କମଳ-ବିଳାସୀ
ମରାଳର କଳଗାନେ ମାନସଉଲ୍ଲାସୀ,

ହେବ ହୈମବର୍ଣ୍ଣ ସଙ୍ଗୀ ତ୍ରିଲୋକପାବନୀ,
ଅକାରଣେ ଏ ପ୍ରଳାପ କରେ ପାଗଳନୀ ।

( ୨୪ )

ବିଶ୍ୱାସ ତାହାର ବିଶ୍ୱରାଜ୍ୟ ବିଧାତାର,
ତର ନ ବର୍ତ୍ତିବ ଚିହ୍ନ କ୍ରୂର ଅତ୍ୟାଚାର ;

ଯେ ହୀନବିଶ୍ୱାସୀ କର୍ମେ ଦେଉ ସେ ପରଖି,
ଏତିକ ମାଗୁଣି ମୋର ଅନାଥ ଅରକ୍ଷୀ ।



Printer :-Radharani Printers, Cuttack- 1981-1000 Copies